ଲେଖକ

# ବଳରାମ ମିଶ୍ର

ପ୍ରକାଶକ

**ଶ୍ରୀ ରୁଦ୍ରପ୍ରସନ୍ନ ମିଶ୍ର**

ଦଳନ୍ଦ୍ରା-ଅଧ

ପ୍ରାପ୍ତିସ୍ଥାନ

**ଭାରତଭାରଣୀ ବୁକ୍‌ଷ୍ଟୋର**

ବଡ଼ବାଟବଜାର,

କଟକ-୨

ମୁଦ୍ରାକର

**ଶ୍ରୀ ପ୍ରତାପକୁମାର ଦାସ**

ବୃଟଜନ୍ ପ୍ରେସ,

କଟକ-୧

ମୂଲ୍ୟ—୪ ଟ-୫୦ ଜେଠେ ଶୁଣ ଲେଖା

# ଉତ୍ସର୍ଗ

ମୋର ପରମପୂଜ୍ୟା ଜନନୀଙ୍କ

ଶ୍ରୀଚରଣ କମଳ

ଭକ୍ତର ନୈବେଦ୍ୟ ସ୍ୱରୂପ

ପୁସ୍ତିକାଟିକୁ

ଅର୍ପଣ କଲି

**ଅଧମ ସନ୍ତାନ**

# ନିଜ କଥା

ନୂତନ ନାଟ୍ୟକାର ସୃଷ୍ଟି କରିବା ଉଦ୍ଦେଶ୍ୟତଃ "ଜନତା ରଙ୍ଗମଞ୍ଚ"ର ଉଦ୍ଦେଶ୍ୟ, ମହତ୍ତ୍ୱ ଓ ଆଦର୍ଶ । ସେଇ ମହତ୍ ଉଦ୍ଦେଶ୍ୟ, ଆଦର୍ଶ ଓ ମହତ୍ତ୍ୱ ବଳରେ ମୁଁ "ବଧତା" ନାଟକର ସୃଷ୍ଟି ।

ନାଟକର କାହାଣି ଲବ୍ଧପ୍ରତିଷ୍ଠ ନାଟ୍ୟଶିଳ୍ପୀ ଶ୍ରୀମାନ୍ ନଟବର ସେଣ୍ଠଙ୍କର ଚଞ୍ଚକଳ୍ପନା । ନାଟକୀୟ ବାୟୁମଣ୍ଡଳ ଓ ବିଷୟବସ୍ତୁର ନାଟ୍ୟାକାଶ ଉତ୍କଳର ପ୍ରଖ୍ୟାତ ମଞ୍ଚନିର୍ଦ୍ଦେଶକ ଶ୍ରୀମାନ୍ ନିରଞ୍ଜନ ଶତପଥୀଙ୍କର ସୁଚିନ୍ତିତ ନିର୍ଦ୍ଦେଶନା ମୋର ଚିର ସ୍ମରଣୀୟ ।

ଜନତା ରଙ୍ଗମଞ୍ଚର ଶିଳ୍ପୀବୃନ୍ଦଙ୍କ ସହଯୋଗ, ସହାନୁଭୂତି, ଅନୁପ୍ରାଣ ଓ କର୍ମନିଷ୍ଠା "ବଧତା"କୁ ସରସ, ସୁନ୍ଦର ଓ ସୁଷ୍ଠୁ କରି ତୋଳି ପାରିଥିବାରୁ ମୁଁ ସେମାନଙ୍କ ନିକଟରେ ମୋର ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି ।

କଟକ

ତା ୯-୧୧-୫୯ ବଳରାମ

# ବିଭିନ୍ନ ପତ୍ର ପତ୍ରିକାମାନଙ୍କର ଅଭିମତ

"ବନ୍ଧତା" ନାଟକର ବିଷୟବସ୍ତୁ ଓ ରଚନା ଉଚ୍ଚକୋଟୀର । ଏହାର ଚରିତ୍ରଗୁଡ଼ିକର ବୈଶିଷ୍ଟ୍ୟ ରହିଛି । ଦର୍ଶକର ସାମନାରେ ଅପୂର୍ବ—ଏଥିରେ ସନ୍ଦେହ ନାହିଁ । ଉଚ୍ଚ ଶିକ୍ଷିତ ଧନୀ ଶ୍ରୀକାନ୍ତର ବ୍ୟସନ ଓ ଅଧଃପତନ, ସୁଧାର ତ୍ୟାଗ, ଦୃଢ଼ତା ଓ ଆଦର୍ଶର ମହନୀୟତା, ରଞ୍ଜନର ନୈତିକତା ଓ ଉଚ୍ଚ ଆଦର୍ଶ ଏବଂ ପ୍ରେରଣାର ସ୍ୱର୍ଗୀୟ ପ୍ରେମ ସହିତ ଗୃହିଣୀର ବଦଳିବାର ମମତା ଓ ଅମାନୁଷିକତା ଉପରେ ଦେଇ ଆଧୁନିକ ସମାଜର ଆଭିଜାତ୍ୟ ଓ ଦାରିଦ୍ର୍ୟର ସଂଘର୍ଷମୂଳକ ସେହି ଜୀବନ୍ତ ଚିତ୍ର ଫୁଟିଉଠିଛି, ଯାହା କ୍ୱଚିତ୍ ଦେଖିବାକୁ ମିଳେ । + + + ଉଚ୍ଚକୋଟୀର ହାସ୍ୟରସ ଓ ନୃତ୍ୟ ସଙ୍ଗୀତ ସମାବେଶ ନାଟକଟିକୁ ଉପଭୋଗ୍ୟ କରିଛି ।

**ସମାଜ**

ତା ୯-୧୧-୫୯

ସାମାଜିକ ନାଟକ "ବନ୍ଧତା" ରେ ମା'ର ତ୍ୟାଗ ଓ ମହନୀୟତାକୁ ଲେଖକ ଶ୍ରୀ ବଳରାମ ମିଶ୍ର ଏକ ନିପୁଣ ରୂପରେଖ ଦେବାକୁ ଚେଷ୍ଟା କରିଛନ୍ତି । + + ସଂଳାପ, ସଙ୍ଗୀତ ଇତ୍ୟାଦି ଦୃଷ୍ଟିରୁ ନାଟକଟି ଉପଭୋଗ୍ୟ ହୋଇଛି ।

**ମାତୃଭୂମି**

ତା ୮-୧୧-୫୯

+ + + ନାଟ୍ୟକାର ଶ୍ରୀ ବଳରାମ ମିଶ୍ର ଏ କ୍ଷେତ୍ରରେ ନୂତନ ହୋଇଥିଲେ ମଧ୍ୟ ତାଙ୍କର ସଫଳତା ସମସ୍ତଙ୍କୁ ଚମତ୍କୃତ କରିଥିଲା । ନାଟକର ସଂଳାପ ରଚନା, ବିଷୟବସ୍ତୁ ନିର୍ବାଚନ ଓ ନାଟକକୁ ଯଥାର୍ଥ ବାସ୍ତବିକ ଯୁଗୋପଯୋଗୀ ଓ ପ୍ରଶଂସନୀୟ ହୋଇପାରିଛି । + +

**ଗଣତନ୍ତ୍ର**

ତା ୮-୧୧-୭୯

+ + + ନାଟକଟିର କଥାବସ୍ତୁ ସରଳ ଓ ସୁନ୍ଦର । ସେଥିପାଇଁ ନାଟ୍ୟକାର ନାଟକୀୟ ଉତ୍କଣ୍ଠା ରକ୍ଷା ପାଇଁ ଚେଷ୍ଟା କରିଛନ୍ତି । + + କଥାବସ୍ତୁ ଓ ଚରିତ୍ର ଚୟନ ଦୃଷ୍ଟିରେ ନାଟ୍ୟକାରଙ୍କର ଉନ୍ନତ କଳାବୋଧର ପରିଚୟ ମିଳେ । + + +

**ରବିବାର ପ୍ରଜାତନ୍ତ୍ର**

ତା ୯-୧୧-୭୯

# ବନ୍ଦିତା

**ଶୁଭାରମ୍ଭ ରଜନୀ** :—୭-୧୧-୫୯ — ଶୁକ୍ରବାର
ପ୍ରଯୋଜକ :—**ଜନତା ରଙ୍ଗମଞ୍ଚ—କଟକ**
ଉଦ୍‌ଘାଟକ :—ଅଡ୍‌ଭୋକେଟ୍ ଶ୍ରୀ ଅନାଥବନ୍ଧୁ ବସୁ
ପ୍ରଧାନ ଅତିଥି :—ଶ୍ରୀ ପି. ଭି. କୃଷ୍ଣମୂର୍ତ୍ତି, ଷ୍ଟେସନ ଡିରେକ୍ଟର, ଆକାଶବାଣୀ, କଟକ ।

ବିଭିନ୍ନ ଭୂମିକାରେ ଅଂଶ ଗ୍ରହଣ କରିଥିଲେ—

ନିରଞ୍ଜନ, ନଟବର, ରାମଚନ୍ଦ୍ର, ପ୍ରଭାକର, ପ୍ରଫୁଲ୍ଲ ମିଶ୍ର, ପ୍ରଫୁଲ୍ଲ ଶାସ୍ତ୍ରୀ, ଶଙ୍କର, ବୃନ୍ଦାବନ, ଜଗନ୍ନାଥ, କୃଷ୍ଣମଣି, [illegible], ସରସ୍ୱତୀ, ବାସନ୍ତୀ ପ୍ରଭୃତି ।

ନିର୍ଦ୍ଦେଶକ :—ଶ୍ରୀ ନିରଞ୍ଜନ ଶତପଥୀ

ସଙ୍ଗୀତ :—କିଶୋର କଣ୍ଠ ଶ୍ୟାମସୁନ୍ଦର ଦାସ

ନୃତ୍ୟ :—ଶ୍ରୀ ବାଳକୃଷ୍ଣ ସେଣ

ମଞ୍ଚ ପରିକଳ୍ପନା :—ଶ୍ରୀ ଲକ୍ଷ୍ମୀନାରାୟଣ ଆଗ୍ରୱାଲ



Approved by D. P. I. Orissa, Cuttack for village Libraries in his circular letter No. 13397 (346) dated 31. 3. 62.

# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ

[ ଶ୍ରୀକାନ୍ତ ଚୌଧୁରୀଙ୍କ ଘରର ଡାଣ୍ଡଘର—ନିଜର ଅଫିସ ସେ ସେଠି କରନ୍ତି—ସାଜସଜ୍ଜା ସାଧାରଣ ଧରଣର—ଖଣ୍ଡିଏ ଟେବୁଲ, ଗୋଟିଏ ଚୌକି, ପୁରୁଣା ଟେବୁଲ କ୍ଲଥ—ଟେବୁଲ ଉପରେ କେତେ ଖଣ୍ଡ ଖାତା, ଫାଇଲ, ରୁଲ୍‌ବାଡ଼ ପ୍ରଭୃତି । ରାଧା ଦେବୀ ଶ୍ରୀକାନ୍ତବାବୁଙ୍କ ସ୍ତ୍ରୀ ଗୋଟିଏ ଟୁଲ ଉପରେ ବସି ଖାତା ପତ୍ର ଦେଖୁଛନ୍ତି—ମୁଖ ତାଙ୍କର ଗମ୍ଭୀର । ବାହାରୁ ଡାକଲେ ଗୁମାସ୍ତା ଗୁଣମଣି ]

ଗୁଣ—ଆଜ୍ଞା, ମୁଁ ଭିତରକୁ ଆସିବି ?

ରାଧା—ହଁ, ଭିତରକୁ ଆସ ! ( ଗୁଣ ଆସିଲେ ) ମୁଁ ତୁମକୁ ଡକେଇଥିଲି ଆମର ଏଇ ଖାତାପତ୍ର ବିଷୟ ନେଇ । କାଲୁ ଫାଣ୍ଡୁ ମୋତେ କହିଲ, ତୁମେ ସାଙ୍ଗେ ସାଙ୍ଗେ ଆସିବା ତ ଦୂରେଥାଉ, ତୁମେ ତୁଆଡ଼େ ଓଲଟି ଘର ଘରକୁ

ହେଲ । ମୁଁ ତୁମକୁ ଡକେଇଥିଲି ସକାଳେ, ତୁମେ ଆସୁଚ ସନ୍ଧ୍ୟା ବେଳକୁ । ଜଣ ଏବର୍ଷ ଜହ୍ନ ବ୍ୟବସାୟୀ ହବ, ନା ଇମିତରେ ଦିନ ଯିବ ?

ଗୁଣ—ବଣ ଜାଣିଲେ ନ ହେବ ଜାଣ୍ଡିବ ଆଜ୍ଞା—ବିସ୍ତୁ ହବ ।

ସୁଧା—ମାନେ ?

ଗୁଣ—ମାନେ ଏଇ କାଠ କାଟିବା, ସ' ମିଲ୍‌କୁ ପଠେଇବା, ବଜା-ରରେ ବିକ୍ରି କରିବା ଇତ୍ୟାଦି ।

ସୁଧା—ତୁମେ ତା'ହେଲେ ଏଠି ଅଛ କାହିଁକି ? କ କାମ ତୁମେ କରୁଛ ଖୁଣେ ?

ଗୁଣ—ଆଜ୍ଞା, ବହୁତ କହୁ । ଏଇ କେତେଦିନ ହେଲା କାଗଜପତ୍ର ଭର୍ତ୍ତି ଏତେ ବଢ଼ି ଯାଉଛି ଯେ, ଏଣିକି ଜୋଟାଏ ଆସିଷ୍ଟାଣ୍ଟ ନ ହେଲେ—

ସୁଧା—ଗୁଣମଣି ! ତୁମେ କଳେ ଜନ୍ମପାଇଚ ତୁମ ମୁହଁରେ ଏ କଥା ? ଖାଗଜପତ୍ର ! ମୁଁ ଜାଣେ ସକାଳୁ ନ ଖାଇ ବର୍ତ୍ତମାନ ପର୍ଯ୍ୟନ୍ତ ତୁମର କାଗଜପତ୍ର କୁ ଦେଖିଥିଲି ଜମାଖର୍ଚ୍ଚ ଖାତା, କେତେ କାଠ ଆସିଚି, କେତେ ବିକ୍ରି ହେଇଚି, କ୍ୟାସ୍ ବାଲାନ୍ସ ତୁମର କଣ, କେତେ ଟ୍ୟାକ୍ସ ଟଙ୍କା ଗଭର୍ଣ୍ଣମେଣ୍ଟକୁ ଦିଆଗଲାଣି, କମିଶନ ତୁମେ କେ ପଟର ଭଣ୍ଡାର ସୁଦର ଭଳିରେ ଦେଇ ପାରୁଚ ଇତ୍ୟାଦି ଇତ୍ୟାଦି । କୌଣସି ଗୋଟିଏ ପେଜ ତୁମର ଠିକ୍ ଅଛି କୌଣସି ଖାତାରେ ?

ଗୁଣ—ଅଯଥା ମୋ ଉପରେ ରାଗି କହୁ ଲଭ ନାହିଁ ଆଜ୍ଞା—ମୋର ଯା.ହା କରିବାର କଥା ମୁଁ ଜାଣିଚଭଳେ କରିଚି

ତେବେ କାମ କରୁ କରୁ କୋଉଠି ଯଦି ଭୁଲ ହୋଇ ଯାଇଥିବ, ସେଥିପାଇଁ ମୁଁ ଏବେ କଣ କରିବ ?

ରାଧା—ବେଶ୍, ତୁମର ଅଫିସ କାମରେ ଭୁଲ ହୋଇଗଲେ । ଫିଲ୍ମ ୱାର୍କ କଣ ହୋଇଯିବ ଶୁଣେ ?

ଗୁଣ—ସେ କାମ ତ ମୋ ଦ୍ୱାରା ହୋଇପାରିବ ନା । ମାସ ମାସ ଧରି ଲୁଚି—ମନୁଷ୍ୟଙ୍କୁ ତ ମନୁଷ୍ୟ ଜଣାଇବ ନ; ଆଉ ଫିଲ୍ମୱାର୍କ ହବ କିମିତି ? ମୁଁ କଣ ଲୁଚିକି ଛବି କରି ଖବରକଠ୍ ମାଡ଼ ଖାଇବାକୁ ?

ରାଧା—କଣ ହେଲା ? ତା'ହେଲେ ଟଙ୍କା ସବୁ ଗଲା କୁଆଡ଼େ ?

ଗୁଣ—ମୁଁ କିମିତି ଜାଣିବି ଆଜ୍ଞା ?

ରାଧା—ତୁମେ ତ କିଛି ଜାଣିବ ନା, ତା'ହେଲେ ତୁମେ ଏଠି ଅଛ କାହିଁକି ?

ଗୁଣ—ଜଦା ଭଣ୍ଡେଇ ପାରନ୍ତୁ । ତା'ଛଡ଼ା ସତ କହିବାକୁ ଗଲେ ମୁଁ ମଧ୍ୟ ଆଉ ଏଠି ରହିବାକୁ ଚାହେଁ ନା ।

ରାଧା—ନା, ଆଉ ରହିବ କାହିଁକି ? ସବୁ ତ ସାରି ଦେଇଛ । ବେଶ୍ ବେଶ୍, ତୁମେ ଯାଅ ଗୁଣମଣି—ତୁମେ ଯାଅ !

ଗୁଣ—ହିଁ, ମୁଁ ମଧ୍ୟ ସେଇଆ କହୁଛି । ତେବେ ଗୁଡ଼ାଏ ଧାର କରିକି ଅଛି, ଯେଉଁଥିରେ ମୁଁ ଖାଲି ଚିନ୍ତା ପଡ଼ୁଛି । ସେଗୁଡ଼ାକ ଟିକିଏ ପରିଶୋଧ ହୋଇଯିବା ଦରକାର । ବିଶେଷ କିଛି ନୁହେଁ—ମାତ୍ର କୋଡ଼ିଏ ହଜାର ଟଙ୍କା । ସେଥିରୁ ବେଙ୍କ ଋଣ ପାଇବେ ପନ୍ଦର ହଜାର ଟଙ୍କା । ଅବଶିଷ୍ଟ ଟଙ୍କା ପାଇବେ ମଦଭାଟିର ମାଲିକ, ଲୁଣ ମନୁଆ ପ୍ରଭୃତି ।

ରାଧା—ଗୁଣମଣି !

ଗୁଣ—ଉତ୍ତେଜିତ ହୁଅନ୍ତୁ ନା ଆଜ୍ଞା, ସାମାନ୍ୟ ଧୈର୍ଯ୍ୟ ଧରନ୍ତୁ । ତା'
ନ ହେଲେ ବ୍ୟବସାୟ ଚଳିବ କିମିତି ?

ବୁଧା—ତୁମେ ଆଉ କଟା ଘା'ରେ ଲୁଣ ଛିଟା ଦିଅ ନାହିଁ ଗୁଣମଣି !

ଗୁଣ—ମାଫ ହେବ ଆଜ୍ଞା ! ଆପଣଙ୍କର ଲୁଣ ଖାଇଛି ପରା !

ବୁଧା—ଗୁଣମଣି !

ଗୁଣ—ଗତବର୍ଷର ଫରେଷ୍ଟ ଟ୍ୟାକ୍ସ ଏ ସପ୍ତାହ ଶେଷ ସୁଦ୍ଧା ଦାଖଲ
ନ ହେଲେ ସମ୍ପତ୍ତି ବାବଦ ସବୁ ନିଲାମ ହେବାର ଯଥେଷ୍ଟ
ସମ୍ଭାବନା ରହିଛି ।

ବୁଧା—ଗୁଣମଣି ! ତୁମେ କେତେ ଥର ଟ୍ୟାକ୍ସ ଟଙ୍କା ଦାଖଲ
କରିଛ ?

ଗୁଣ—ଆଜ୍ଞା, ବାବୁଙ୍କର ମଦ ମାଂସକୁ ତ ଟଙ୍କା ନିଅଣ୍ଟ—ଟ୍ୟାକ୍ସ
ଦାଖଲ ହେବ କିମିତି ?

ବୁଧା—ଗୁଣମଣି ! ଶେଷରେ ତୁମେ ଏଇଆ କଲ ? ଛିଣ୍ଡାଲୁଗା
ଖଣ୍ଡିଏ ପିନ୍ଧି ତୁମେ ଯେଉଁଦିନ ମୋ ଘରକୁ ଆସିଥିଲ
ଗଣ୍ଡିଏ ଭାତ ଖାଇବ ବୋଲି, ସେ କଥାକୁ ତୁମେ ଏତେ
ଶୀଘ୍ର ଭୁଲିଗଲ ? ତୁମକୁ ଆଶ୍ରୟ ଦେଇଥିଲି—
ଶେଷରେ ତୁମେ ମୋର ତଣ୍ଟି କାଟିଲ ? ବିଶ୍ୱାସରେ
ଶେଷକୁ ତୁମେ ମରଣର ଦଣ୍ଡ ଦେଲ ?

ଗୁଣ—ଦେଖନ୍ତୁ ଆଜ୍ଞା, ଆପଣ ଅଯଥା ମତେ ସନ୍ଦେହ କରନ୍ତୁ ନା ?

ବୁଧା—ସନ୍ଦେହ କରିବି ନା ? ମୁଁ ଦଶ ହଜାର ଟ୍ୟାକ୍ସ ଟଙ୍କା ତୁମ
ହାତରେ ଦେଇଥିଲି ?

ଗୁଣ—ମୁଁ କଣ ଅସ୍ୱୀକାର କରୁଛି ? ହେଲେ ତେଣେ ଯେ
ମାଲିକଙ୍କ ହୁକୁମ ଅନ୍ୟପ୍ରକାର । ମୋର ବା ଦୋଷ କଣ ?

ବୁଧା—ବୁଝିଛି ଗୁଣମଣି ! ତୁମେ ସମସ୍ତେ ମେଳ ବାନ୍ଧି ମୋ

ଯଥାରୀତି ତାଙ୍କୁ ଜାନୁଯୋଡ଼ି ପ୍ରଣାମ କରିଦେଲ । ହେଲେ
ତୁମକୁ ଧର୍ମ ସମ୍ଭବ ଏ ଗୁଣମଣି, ତୁମକୁ ଧର୍ମ ସମ୍ଭବ ଏ

(ବାହାରୁ ଡାକିଲେ ଦୋରସ୍ୱାମୀ ଭେଙ୍କଟ ରାଓ)

ରାଓ—ମଣିବାଈ ! ମଣିବାଈ ! ଓରେ ସିନ୍ଧୁ । ଦୁର୍ଗଲକ୍ଷ୍ମୀ
ଓପ୍ପୁନାନୁ (ପ୍ରବେଶ କରି) ।

ରାଧା—ନମସ୍କାର ରାଓବାବୁ, ବସନ୍ତୁ !

ରାଓ—ନାମସ୍କାରମ୍ ଅମ୍ମା ! ଏ ମାମ୍ମା ! ଏଠେ ଗୃହିଣୀ କ
କରୁଥିଲ ? ମୁଁ ଭାବିଲି ଆମ ମଣିବାଈ ଆଜି ଅନ୍ଧ
ଅନ୍ଧକାର ମାତୃଭୋଜ ହୋଇଗଲେ । ଜୟ ଯଗନ୍ତ ଅମ୍ମା !
କଅଣ ହେ ମଣିବାଈ ?

ରାଧା—ନା ରାଓବାବୁ, ମୁଁ କାଗଜପତ୍ର ଟିକିଏ ଦେଖୁଥିଲି ।

ରାଓ—ଅବ-ବା-ନାଇନା ! ତମେ ଅଫିସ ଚାଇଁ କରୁଛ ?
ମାଇକନା ଲୁକ ହେଉଛନ୍ତି ? ଦେଖିଲ ନା ମଣିବାଈ !
ଏଲେ ଅମ୍ମା, ଆମ ରହ୍ମାମ୍ ଅମ୍ମା···ଅମର ଭାଷ୍ୟ
ଭେଟେ ଭଲିଲ ନା—କୋ ଚାଇଟିକ ଏଲ୍ଲିନ ।

ରାଧା—ଆପଣ ଶିଖେଇଲେ ପିନା ଶିଖନ୍ତେ ।

ରାଓ—ନାଇଁ, ନାଇଁ, ମୁଁ ମାଷ୍ଟ୍ରେ ଶିଖେଇଲି । ଅମର ପାନ୍ତେଲ
ସାତ୍ୟାନାରସ୍ୱଣ । ବଡ଼ ଜାଣିବାର—ପିଏ ମାଷ୍ଟ୍ରେ କଲି,
ହେଲେ ମିଶେ ହେଲିନ । ଖାଲି ଖାଇବାର, ଶୁଇବାର —
ଖାଇବାର, ଶୁଇବାର । ଜସ୍ଟନା ତା ଚାଇଟି ଆମ
ରହ୍ମାମ୍ ଅମ୍ମାର ।

ରାଧା—(ହସି) ହଉ, କୁଆଡ଼େ ଆସିଲେ ରାଓ ବାବୁ ?

ରାଓ—ହଁ ! ଜୟ ବୋଇଲେ ସଂଗତ, ବାବୁ କେତେ ଟଙ୍କା ଆମ
ଆଣିଥିଲେ ନା ସେ ଟଙ୍କାଟାରୁ ପେଠ କଢ଼ୁଥିଲେ ଟିକିଏ

ବଲ ହୋଇଥାନ୍ତା—ଆମର ଟାବ୍ଲୁ ବଡ଼ା ହବନା···
ସେଲ୍‌ଟାବ୍ଲୁ । ସେଥିପାଇଁ ଆଜା ଆସିବାର ।

ସୁଧା—ଆପଣଙ୍କର କେତେ ଟଙ୍କା ରଞ୍ଜୁବାବୁ ?

ରଞ୍ଜୁ—ମୋଟ୍ ବାରହଜାର ନେଇଥିଲେ ଆଜ୍ଞା, ଆଉ ଜଣ ମଣି-
ବାବୁଙ୍କର ତାରୁ କେତେ ପାଇବାର ଅଛି । କେତେ
ଜଳବାକୁ ବଳିଥିଲ ହେ ? ତିନ ହଜାର ପରା ? ହଁ ଆଜ୍ଞା,
ତାଙ୍କର ଆମର ସବୁ ମିଶିକରି ପନର ହଜାର । (ଗୁଣକୁ)
ପନର ହଜାର ପରା ହେ ?

ସୁଧା—କ'ଣ ଗୁଣମଣି ! ତାଙ୍କର ବାର ହଜାର, ତୁମର ତିନ
ହଜାର ?

ଗୁଣ—କଣ ରଞ୍ଜୁ ବାବୁ ମୋର ତିନହଜାର ?

ରଞ୍ଜୁ—ଏତେ ଏକାକ ନ ହେ ? ମୋର ବାର ହଜାର ଆଉ ତମର
ତିନ ହଜାର ମିଶିବାକୁ କଲ ନ ଥିଲ ? ସେତା ଆଜା,
ଆଉ କଣ ? ମୁଁ ପନର ହଜାର ନେଲେ ତମେ ନବାନ ନ
ହେ ?

ଗୁଣ—ଆରେ ଆଜ୍ଞା ସେକ ! ମୁଁ କଣ ନେବ ମାଗଣାରେ ?
ମୁଁ ଦେଇଥିଲି, ନେବ ।

ରଞ୍ଜୁ—ହଁ ହେ, ମିମିଛ ଆଜା ବୋଲ । ବୁଝିଲେ ନା ଆଜ୍ଞା !

ସୁଧା—ହଁ ସବୁ ମୁଁ ବୁଝିଲିଣି ରଞ୍ଜୁ ବାବୁ ! ଆପଣ ଯାନ୍ତୁ, ପରେ
ଆସିବେ, ମୁଁ ନିଶ୍ଚୟ ଆପଣଙ୍କର ବନ୍ଦୋବସ୍ତ
କରିବ । ଆଉ ତୁମେ ବି ଯାଅ ଗୁଣମଣି—ତୁମ ବିଷୟରେ
ମୁଁ ଆଉ କିଛି ମନ୍ତବ୍ୟ କରିବାକୁ ଚାହେଁନା ।

ଗୁଣ—ବେଶ୍ ବେଶ୍, ମୁଁ ଆସୁଛି । (ପ୍ରସ୍ଥାନୋଦ୍ୟତ)

ରଞ୍ଜୁ—ଆରେ ଆରେ, ମଣିବାଉ ! ଚୁପ ହେ ମିଛିକରି ଯିବା ।

ଏତେ କୋପମ୍ କାର୍ତ୍ତିକ ହେ ! ତମର ଝଗଡ଼ା ତମେ
ଦବପସ୍ତ ହେ ? ସେ ଡାଳୁଟା ବୋଉକାନରୁ ଯୋ କାଲି
ନେଲ, ଏବେ ଦବ ଘସ୍ତ ହେ ?

ଗୁଣ—ଯରେ ଦେଖ, ତମେ ଆସ [ପ୍ରସ୍ଥାନ]

ଭଣ୍ଡ—ଆରେ ଆରେ, ସମାସ୍ତ୍ର ସମାସ୍ତ୍ର, ଏଟା କଣ ହେ ?
ଆଡେ ଶୁଣ ହେ ? ମଣିବାଈ, ମଣିବାଈ ! ମୁଁ ପାଉଛୁ
ଅନ୍ନା—ନାମାସ୍ତାସ୍ତମ୍ । ଦେଖୁଚନା ଅନ୍ନା ଡାଳୁ ନେଇକରି
ଯକେଇବାର, ମାଗିଲ୍ ବେଳକୁ ସେଟା ଆଜା ଥିଲସ୍ତ ।
ସମାସ୍ତ୍ର—ସମାସ୍ତ୍ର—ମଣିବାଈ, ମଣିବାଈ !

[ଡାକ ଡାକ ପ୍ରସ୍ଥାନ]

ଓରେ ଝିପ୍ପା—ଗସ

[କଳୁଷଣ ଘରକରେ ରଧା ବେଶ ପଦସ୍ତରଣ କରି
ବସିଲେ ଟୁଲରେ—ପ୍ରବେଶକଲ ରଙ୍ଗ ଭାଧ
କାନ୍ଦ—ରଧା ଦେଵୀ ଜଟିପଡ଼ ରଙ୍ଗକୁ ଧରି—]

ରଧା—ରଙ୍ଗ ! କଣ ହେଲ ତୋର ରଙ୍ଗ ? ଧଏ ମାଇଲ ?

ରଙ୍ଗ—ନାଁ ।

ରଧା—ଆଉ କାନ୍ଦୁଚୁ କାର୍ତ୍ତିକ ?

ରଙ୍ଗ—ନା ମୁଁ ଖେଳିବାକୁ ପିବନ ।

ରଧା—କାର୍ତ୍ତିକ ପିବୁନ ? ମୋ ସୁନାପୁଅ ଯସ୍ତ—ମତେ କହିଲ୍
କଣ ହେଲ ?

ରଙ୍ଗ—ମୋତେ ଯର କେହି ଖେଳନ୍ତୁ ନାହାନ୍ତି । କାଳବାଣ ମତେ
କହୁଚ, ଯା ତୋ ବାପାଘର ଜୁଆ ଖେଳିବୁ । ମତେ ତାଙ୍କ
ସାଙ୍ଗେ ଖେଳେଇବାକୁ ମନା କରୁଚ ।

ରଧା—ହଉ, ଭାଇକାଣଙ୍କୁ ମାଣିବା । ତୁ ଯା ନ, ପୁଜାଙ୍କୁ

କହିବୁ, ତତେ ଖାଇବାକୁ ଦବ । ଖାଇକରି ଆସିଲେ
ମୁଁ ଘୋଡ଼ା ହେବ, ତୁ ମୋ ଉପରେ ବସିବୁ । ବାହାରକୁ
ଯିବା ତୋର ଦରକାର ନାହିଁ ।

ରବି—ମାମୀ, ତୁ ଘୋଡ଼ା ହବୁ ?

ରାଧା—ହୁଁ ।

ରବି—ରାଇଟ୍ [ପାଞ୍ଚ ପାଞ୍ଚ ଫେରି ] ନାଇଁ ନାଇଁ ମାମି ! ମୁଁ
ଘୋଡ଼ା ହେବ, ଆଜ୍ଞା ତୁ ବସିବୁ । ରାଇଟ୍ ?

ରାଧା—ହଉ ହଉ, ତୁ ଯା ଖାଇକରି ଆ ।

ରବି—ନାଇଁ ନାଇଁ, କହ ତୁ—ମୁଁ ଘୋଡ଼ା ହେବ ତୁ ବସିବୁ ।
ରାଇଟ୍ ?

ରାଧା—ଇଏସ୍ ସାର୍, ରାଇଟ୍ ।

ରବି—ଗୁଡ଼, ଭେରି ଗୁଡ଼ [ବୁଲିଗଲା ]

[ ରାଧାଦେବୀ ସେମିତ ଚକିତ ହୋଇ କାଗଜ ପଢ଼ଣରେ
ମନଦେଲେ—ପ୍ରବେଶ କରୁଛି ପାଣ୍ଡୁ —ପୁରୁଣା
ଚାକର—ବୟସ ୫୦।୬୦ ହବ ]

ପାଣ୍ଡୁ—ମା’ ! ମତେ ଛୁଟି ଦଅ ମା’—ମୁଁ ଆଉ ପାରୁନ ।
ଏଣିକି ମୋର ଛୁଟି ।

ରାଧା—କଣ ହେଲାଟି ପାଣ୍ଡୁ ।

ପାଣ୍ଡୁ—କହୁ ନୁହେଁ ମା’ ! ଏଥରୁ ମୋର ଚାକିରି ଗଲାଣି ।
ଖଟି ଖାଇବାର ବଳ ଗଲାଣି । ମୋ ଉପରେ ଆଉ
ଭରସା ରଖିକି କରିବ ମା’ ! ମୋ ବାଟରେ ମୁଁ
ବୁଝିଯିବ ।

ରାଧା—[ହସି] ପାଣ୍ଡୁ ! କଥାଟା କ’ଣ ମତେ କହୁନୁ ?

ପାଣ୍ଡୁ—କହୁନି ମା’ କହୁଛି । ହେଲେ ଏ ବୁଢ଼ା କଥାର କ’ଣ

କହୁ ଚାମ୍ ଅଛୁ ? କି ସେ କଥାଁ ସାହିଁଶ ଭଗବତୀ ଅଜନ୍ ହେଲ, ତା' ହସ୍ତରେ ପାଟଦାଣ୍ଡ, ମାଣ୍ଡିକଦାଣ୍ଡି ଦୁଧଭାତ ଖଣ୍ଡ ଜମିସବୁ ଏକକେଲ ଷେଣ୍ଡରେ ଏ ଦୁର ଲୋକମାନଙ୍କର ଜାଗୀର ହେବାକୁ ବେଳ ।

ସୁଧା—ଥାଉ ପାଣ୍ଡୁ ! ସେ ଗଲା କଥାରୁ କ'ଣ ମିଳିବ ?

ପାଣ୍ଡୁ—କ'ଣ ମିଳିବ ? ଏ ସବୁ ତ ଖଣ୍ଡିଏ ବୋଲି ପାଠ ଭଟା ହେଲିନି । ବୃନ୍ଦାବନବାବୁ ଯାହା କଲେ ତାଙ୍କ ପେଟକୁ ଜାଣୁ—

ସୁଧା—ଥାଉ ପାଣ୍ଡୁ ! ଥାଉ, ବନ୍ଦକର ।

ପାଣ୍ଡୁ—ହଁ ମା' ମୋର ମୁଁ ଚୁପ୍ ହେଲି···ମୋର କ'ଣ ଅଛି ? ମୁଁ ଭୁଲିଲି ମା' ।

ସୁଧା—କାଲିର କଥାଟା କ'ଣ ହେଲା ମୋତେ କହ ?

ପାଣ୍ଡୁ—କ'ଣ କହିବି ମା' ? ବାବୁଙ୍କର ମତ ଭାଙ୍ଗିଲୁ ଏବେ କଥା ମଧ୍ୟ ଭୁଲିଗଲି ।

ସୁଧା—ପାଣ୍ଡୁ !

ପାଣ୍ଡୁ—ହଁ ମା', ବାବୁ ଗତରାତିରେ ମନେ, ଚାମ ପାଖରୁ ପଞ୍ଚଶ ଟଙ୍କା ନେଇକରି ପିଇବାକୁ । ବର୍ଷିତନ୍ତି ଜୁଆଖେଳରେ—ମୁଁ ଟଙ୍କା ନେଇ ଦେଲେ ଖେଳଟା ହେବ ।

ସୁଧା—ପାଣ୍ଡୁ !

ପାଣ୍ଡୁ—ପାଣ୍ଡୁ ଆଜି ବାଟ ଭୁଲିଛି ମା' । ତା' ନହେଲେ ଏତେ ବଡ଼ ପାପ କଥା କହିବାକୁ ତୁମ ଆଗରେ ସାହସ କରନ୍ତା ? ମୁଁ ନିଜେ ନେଇ ଟଙ୍କା ଦେଇ—ବାବୁ ଜେଲରେ । ତା' ଆଗରୁ ମୁଁ ଏ ବାଟରୁ ଖସିପିବ ।

ସୁଧା—ପାଣ୍ଡୁ ! ସେତେ ପାଠ ପଢ଼ିଥିଲେ ବି ମୁଁ ତାଙ୍କର ସ୍ତ୍ରୀ ।

ଆଉ ସେଗ୍ଡ ସ୍ତ୍ରୀ ଟେବେଲ ମୋର ସବୁଠୁ ବଡ଼ ଦୁର୍ବଳତା ତାଙ୍କ ପାଖରେ । ସେଥିପାଇଁ ଅଭ୍ୟାସରୁ, ବ୍ୟାଭ୍ୟାସ ଭଳେ ଏ କୌଣସି ଧନ ମୁଁ ତାଙ୍କର ଅବାଧ୍ୟ ହୋଇନ । ଜମି-ଜାଗା, ବାଡ଼ିବଗିଚା, ଧନ, ସମ୍ପତ୍ତି, ଟଙ୍କା ପଇସା ସବୁ ଗଲା । ଗାଁ, ସରଦ୍ୱାର ସୁଦ୍ଧା ଭୋଗପୂର୍ବର ଏ ଭଣ୍ଡମାନଙ୍କରେ ପଡ଼ିଲା । ତା ଏ ମୁଁ ସହିଲି; କିନ୍ତୁ ଆଉ ନୁହେଁ । ମଦ ଖାଇ ସେ ଜୁଆ ଖେଳିବେ ? ନା ନା, ମୋଠେ ନୁହେ । ମୁଁ ବାଧ୍ୟହୋଇ ଆଜ ତାଙ୍କର ଅବାଧ୍ୟ ହଉଛି ।

ଶ୍ରୀକାନ୍ତ—( ସାମାନ୍ୟ ମାତାଲ ଅବସ୍ଥାରେ ପ୍ରବେଶ ) ମିସେସ୍ ଚୌଧୁରୀ ଅବାଧ୍ୟ ହେଲେ ତାଙ୍କୁ ଜୋରକରି ବାଧ୍ୟ କରି ହଉପାରିବ । ଆଉ ତା କରିବା ମିଷ୍ଟର ଚୌଧୁରୀ ବେଶ ଜାଣନ୍ତି । ପାଣ୍ଡୁବାବୁ ! ମୁଁ ଅପଣଙ୍କୁ ପଠେଇଥିଲି ମତେ କେଇ ଜଣେଇ ଟଙ୍କା ଦବାପାଇଁ···ଆପଣ କିନ୍ତୁ ଏଠି ମିସେସ୍ ଚୌଧୁରୀଙ୍କଠାରୁ ସରମନ୍ ଶୁଣିବାରେ ବ୍ୟସ୍ତ ।

ରାଧା—ରାଧା ଦେବୀଙ୍କର ଉଣତାର ଶକ୍ତି ଯେତେବେଳେ ଜଣଙ୍କୁ ନାହିଁ, ସରମନ୍ ଦବାକୁତ୍ତା ଆଉ କିଏ ବା ସେ କରନ୍ତେ !

ଶ୍ରୀକାନ୍ତ—ବୃହତ୍, କଥାଗୁଡ଼ାକ ବେଶ୍ ବଢ଼େଇ କହୁଥାଉଛ ରାଧା !

ରାଧା—ସିଧା ରାସ୍ତାରେ କାମ ନ ହେଲେ ଅଣସିଧା ବାଧ୍ୟ ହୋଇ ବଢ଼େଇ ବୁଲେ ।

[ ବୃଦ୍ଧବାଇଥିଲେ ]

ଶ୍ରୀକାନ୍ତ—ରାଧା ! ଅଲମାରର ଚେଷ୍ଟର ଚାବି ଦଅ ?

ରାଧା—ନା, ମୁଁ ଦେବ ନାହିଁ ।

ଶ୍ରୀକାନ୍ତ—ଏଁ-ତରକାଣ୍ଡି ? ଏ ଅଧିକାର, ଏ ସାହସ ତୁମର କେବେଠୁ ହେଲା ଶୁଣେ ?

ସୁଧା—ଜାଣିନ, ମୋର କ'ଣ କିଛି ଅଧିକାର ନାହିଁ ?

[ ବୁଲିଯାଉଥିବେ ]

ଶ୍ରୀକାନ୍ତ—ସୁଧା ! ମୁଁ କହୁଛି ସୁଦ ଦେଇଯାଅ ।

ସୁଧା—ସୁଦ କ'ଣ ହବ ?

ଶ୍ରୀକାନ୍ତ—ସେ କୈଫିୟତ ଦେବା ପୂର୍ବରୁ ସ୍ୱାମୀର ଆଦେଶ ମାନି ସୁଦ ମୁଠାକ ଦେଇଯାଅ···ତା' ନ ହେଲେ ମତେ ବାଧ୍ୟହୋଇ ତୋର ଖରଚ ଜଣିବାକୁ ପଡ଼ିବ ।

ସୁଧା—ଶେଷରେ ଏକଥା କହିବାକୁ କଣ୍ଠରେ ସ୍ୱର କୋଉଠୁ ଆସିଥିଲ ? ତୁମ ପାଦଧରି କେତେଥର କହିଛି, ଏ ସବୁ ଦୁର୍ବୁଦ୍ଧି ତୁମେ ଛାଡ଼ । ମଦଖିଆ, ଜୁଆଖେଳ ସାଙ୍ଗ-ପିଲାଙ୍କର ମାନସମ୍ମାନକୁ ଏମିତି ପାଦରେ ତୁମେ ଦଳାଅ ନା । ମୋ କଥା ଟିକିଏ ରଖ । ଲୋକକୁ ଟିକିଏ ସୁଖ ଦିଅ । ଉପର ଭଗବାନଙ୍କୁ ଟିକିଏ ନଜର ଦଅ ।

ଶ୍ରୀକାନ୍ତ—ସୁଧା ଦେବୀ ! ଏଇ ପଣ୍ଡିତାଣୀ, ଧର୍ମବାଣୀ କୌଣସି ମଠର, ମସ୍‌ଜିଦ କିମ୍ବା ଗୀର୍ଜାରେ ଶୁଣେଇ ପାରିଲେ ହୁଏତ ଦଶେ ସନ୍ନ୍ୟାସୀ ଖବ୍ ଆଗ୍ରହର ସହିତ ଶୁଣନ୍ତେ—କିନ୍ତୁ ଏଠି ନୁହେଁ । ଏଇଟା ଘର—ଏଠି ଗୃହସ୍ଥ ମଣିଷ—ସନ୍ନ୍ୟାସୀ ନୁହେଁ । ତୁମେ ମଣିଷପଣ ଟିକିଏ ଚଳିବାକୁ ଶିଖ ସୁଧା ! ସ୍ୱଚ୍ଛା ହଅ ।

ସୁଧା—ନା, ମୁଁ ସୁଦ ଦେବି ନି । ତୁମ ଇଚ୍ଛା, ତୁମେ ଯାହା କର । ମଦ ଖାଇ, ମାତାଲ ହୋଇ ତୁମେ ବସି ଜୁଆଖେଳିବ ଆଉ ମୁଁ ତୁମକୁ ଦେବି ଟଙ୍କା ?

ଶ୍ରୀକାନ୍ତ—ହ୍ୱାଟ୍ ଡୁ ୟୁ ସେ ? ଭୂତ ଦେଖ ନାହିଁ ? ଗେଟ୍ ଆଉଟ୍
[ ଟେବୁଲକୁ ଜୁଲ୍‌ଜୁଲ କରି ଉଠେଇ ] କ'ଣ ଦେଖ ନା ନାହିଁ ?
ମର ସେ, କ'ଣ ଶୁଣୁଛ ନା ନାହିଁ ? ବ୍ଲଡ଼ି ସ୍କାଉଣ୍ଡ୍ରଲ—

ଘାଣ୍ଟୁ—ବାବୁ ! ବାବୁ ! [ ଥରିବାକୁ ଧରିନେଇ ] ଏ କ'ଣ
କହୁଛ ବାବୁ ? ଏଇ ନଅ ବର୍ଷ । ନେଇଯାଅ ମନଇଚ୍ଛା
ଟଙ୍କା—ଖଅ ଯାଅ । [ କାନ୍ଦିଦେଲେ ] ମା' ମୋର ସକାଳ
ବେଳୁ ଗାଁରେ ମାଣ୍ଡି ଝୋଟାଏ ନ ଦେଇ ଚାଲାଣର କାମ
ଶିଖୁଚନ୍ତି···ଯେଉଁଦିନେ ଚୂର୍ଣ୍ଣ ହେବ ତାଙ୍କୁ ଏଥିରେ ପିଟିବ !
ମା' ମୋର ଉଠିନିଛି ?

ଶ୍ରୀକାନ୍ତ—ନୋହାଟ୍—ଖାଲାପଟ କାମ । [ ପାଖ ପାଖ ଯେଉଁ ] ଓଃ
ଇଏତ୍, ସ୍ୱାଧୀନେଶ୍ୱ ! ବାଟରୁ ଶୁଣିଆସିଛ ମୋ ଗୁମାସ୍ତା
ବୃନ୍ଦାବନ ବାବୁଙ୍କୁ ଆପଣ ବରଖାସ୍ତ କରିଚନ୍ତି ? ଖାଲି
ପଟଂର ଅଫ୍ ଦନ୍ତ ଆପଣ ବୃତ୍ତାଏ ହୁଲ ଲେଖିଟି
ପାଇଣ୍ଡ ଆଇନ୍ କରିଚନ୍ତି ? ଏ କଥା ସତ ? ଆଉ ଯେ
ପ୍ରିନ୍ ଆଉଟ୍ ?

ଘାଣ୍ଟୁ—ବାବୁ ! ବାବୁ ! [ ରୋଦନ ]

ଶ୍ରୀକାନ୍ତ—( ହାତ ଝୁଙ୍କି ଟେବୁଲ ପାଖରୁ ଦୂର ଫାଇଲପତ୍ର ସବୁ
ଫେପାଡ଼ି (କୋଟେଲ । ) ଗେଲ୍‌ଭ୍ରତ୍—ଡ୍ୟାମ୍ ଲଇଫ
ଟ୍ୱୋର ଅଫିସ—ଡ୍ୟାମ ଲଇଫ ଟ୍ୱୋର ବଜ୍‌ନେସ୍
( ସ୍ୱାଧୀନଙ୍କ ଜନକଙ୍କୁ ଆପି ) ତମ ଅଫିସର ଦୁର୍ଦ୍ଦଶା ପାଇଁ
କୌଣସି ମନୁଷ୍ୟ ରଖା ଦେବ ? ଆଉ ସେ ଏକ
କମେଣ୍ଟ ? ( ବୃତ୍ତାଏ ମାଣ୍ଡ ) ଡ୍ୟାମ୍ ହେଲ ।

ସ୍ୱାଧୀ—ଶ୍ରୀକାନ୍ତ !

ଶ୍ରୀକାନ୍ତ—ଡ୍ୟାଣ୍ଡ ପୂ ପି ତ୍ୟାଜ ଆଉ ଆମ ଗୋଇଙ୍ଗ୍ ଟୁ୍ ଡାଇ ହେଷ ଘୂଜ୍ ? ( ଘୂଳ ଯାଉଥିଲେ )

ରବ—( ଦଉଡ଼ି ଆସି ସାମନାରେ ହାତ ଦେଖାଇ ଛୁଡ଼ାଇବାର ) ବାବା !

ଶ୍ରୀକାନ୍ତ—ମୁଭ୍ ଆଉଟ୍—ମୁଭ ଆଉଟ୍ ।

( ହାତରେ ପେଲଦେଇ ଘୁଞ୍ଚଗଲେ )

ରବ—( ଉଠି ଜୋର କରି ଦଉଡ଼ଯାଇ ସୁଧାଙ୍କୁ କୁଣ୍ଢେଇ ଧରିଲେ ) ମାମୀ !

ସୁଧା—ରବ ! ( ଜାକଧରି ଅର୍ଦ୍ଧମୂର୍ଛିଲେ )

---

## ଦ୍ୱିତୀୟ ଦୃଶ୍ୟ

( ଜମାହଣ୍ଡ୍ରିର ଉଦୟନାଥଙ୍କ କ୍ୱାର୍ଟର—ପ୍ରବେଶ କଲେ ଗୁଣମଣି )

ଗୁଣ—ବାବା ! ଦାଦା !

ଉଦୟ—( ଉଠନ୍ତି ) କିଏ କେ ?

ଗୁଣ—ଏ ଦାଦା, କଣ ଲୋକ ଜାଣି ପାରୁଛ ? ( ପ୍ରବେଶ କଲେ ଉଦୟ ) କଣ ଆପରେଶନ ଖୋଲ ଦବ ନାହିଁ ?

ଲବଙ୍ଗ—ଏଁ, କର୍ଣ୍ଣ ସାହାବ ଘର କଥା କହୁଥିଲ ଯେ ବାପ ଗୁଣମଣି !

ଗୁଣ—ନ ଉତ୍ତର କାହିଁକି ଯେ ?

ଲବଙ୍ଗ—ଉତ୍ତର ? କଣ ତମେ ମୋ ହାକିମ ? ଆରେ ଆରେ, ଖଣ୍ଡ ତ କଥା କହୁ ଥାଉଚ ?

ଗୁଣ—ଉତ୍ତରକ କାହିଁକି ? ନିଶ୍ଚୟ ଉତ୍ତର । ତୁମେ ହଜୁର ଘଡ଼ିକ ପାରୁଲେଣି, ଆମର ସେବା କରିବାକୁ ବାଧ୍ୟ ।

ଲବଙ୍ଗ—ବାଧ୍ୟ ? ବାପ ଗୁଣମଣି, ଇଣ୍ଡ୍ରଟି ମରେ ? ଲାଗିଲେ ମୁଁ କାହାକୁ କୁହେଁ ।

ଗୁଣ—ଓଃ ଏତେ ବଡ଼ବଡ଼ କାହିଁକି ଦାଦା ?

ଲବଙ୍ଗ—ଇଟିଏ ନାହିଁ ?

ଗୁଣ—ଦାଦା, ପରରେ ତୁମେ ଜମିଜ ଉହୁହାଇଚ ମୁଁ ଟେଲବର କହୁ କହୁ । ହଉ, ମରେ ମୋ କୁକୁର ପାଇଁ ଔଷଧ ବଟିକି ?

ଲବଙ୍ଗ—କ'ଣ କହିଲ ବାପ ଗୁଣମଣି ? ତମ କୁକୁର ପାଇଁ ଔଷଧ ଦେବ ମୁଁ, ଏତେଟା ଜଣ ଓଷ୍ଟକାଲ୍ସରଖାନା କରି ପାରିବ, ନା ମରେ ଓସ୍ତୁଖାନା କରି ପାରିବ ?

ଗୁଣ—କ'ଣ ଡବକାଣ୍ଡି ଗା' କହଲେ ?

ଲବଙ୍ଗ—ନା । ଯା ମୋର କ'ଣ କରିପକେଇବୁ ଯା ।

ଗୁଣ—ଦେଖନ୍ତୁ ଦାଦା । ଖର୍ଚ୍ଚ ଘରର ବର୍ଷର ଘଷୁଣ୍ଡିତା ଆପଣଙ୍କର ପଛୁ ବୋଲି ପ୍ରତ୍ୟେକ କଥାରେ ଆମକୁ ଟର୍ଣ୍ଣର କହିବାକୁ ପଡ଼ୁଚି । ଆପଣଙ୍କ ଭଳି ଏକ୍ସପିରିଏନ୍ସଡ୍

ନମ୍ବାଇଣ୍ଡର ଏ ଅଞ୍ଚଳରେ କଏ ଅଛୁ ? ଅଚ୍ଛା ଆପଣ —

ଜଦସ୍ୱ—ତୁ ଗିଲା ବାପା ମତେ ଶକ୍ତିଲୁ, ହେଲେ ସେ କଥଣ ଓଁଣ୍ଡର କ'ଣ ହେଲିନ ? ମୋର ସବୁ କଥାକୁ ସେ ସବ ଚ ଜନାମୀ କନ୍ଧ ଉଡ଼େଇ ଦେଉଛୁ । ସ୍ୱକ ବାପ ସ୍ୱକ— ତା'ଙ୍କ ଯାଉ ହେଲେ ବାପ ଗୁଣମଣ, ଦ୍ୱା ଭିତରେ ତମେ କୁକୁର ଘୋଷିଲଣି ?

ଗୁଣ—ସେ ସବୁ ଆପଣଙ୍କ ଆଶୀର୍ବାଦରୁ ଦାଦା । ତ'ଠା ଅଲଫିମିଅନ୍, ତ'ଠା ବୁଲଡଗ୍ ରଖିଛୁ ।

ଜଦସ୍ୱ—ହଁ, ପୁ ବୁ କଟନ୍ତୁ ବୁଢ଼ିଆ ପୁଅ । ମା' ବାପ କ'ଣ ମିଛରେ ଗୁଣମଣି ବୋଲି ନାଁ ଦେଇଛନ୍ତି ! ଆ ବାପା, ଆ—ଚୋର ଲେଣେ ଲେଲେ କାମ ଥିବ । ଦେଖାଉ କଣିକ କଥା—ସବଳ ସବଳ ଏବା କରୁଦଏ ।

ଗୁଣ—ହଉ, ବୁଲନ୍ତୁ ।

(ଉବଗ୍ରେ ନ୍ୟଶ୍ନ ଯାଉଥିଲେ, ବାହାରୁ ଡାକଲେ ଗୁଣ୍ଡ)

ଗୁଣ୍ଡ—ନମାଇଣ୍ଡର ବାଉ, ନମାଇଣ୍ଡର ବାଉ !

ଜଦସ୍ୱ—ଧେତେରେ !

ଗୁଣ୍ଡ—(ପ୍ରବେଶି) ନାମାସ୍କାରମ୍ ନାମାଇଣ୍ଡର ସାବୁ ! ଏଁ ମଣିବାଉ ଆବ ? ନାମାସ୍କାରମ୍, ନାମାସ୍କାରମ୍ ।

ଗୁଣ—ହୁଁ । (ରଗରେ ମୁହଁ ଫେରେଇ ନେଲେ)

ଗୁଣ୍ଡ—କସ ପାଇଁ ଏତେ ଲୁଗ ହେ ? ଟିକୁ କାହିଁ ଦକ ନ ହେ ?

ଗୁଣ—ବାଃ, ଭାଷା ତ ସୁନ୍ଦର ଦେଖୁଛ । ଏ ଗୁଣ୍ଡ, ମତେ ଶୁଣୁଛନ୍ତି ?

ଗୁଣ୍ଡ—ଅବ୍‌ବା । ଲନ୍ତା ଲୁଗ କସ ପାଇଁ ହେ ? କସ ଭମିତ ଲୁହିତ ହେ ମଣିବାଉ ? ହଲଏ ମଣିବାଉ ! ଆମ କଥା

ଲଦପୃ—ମୋ ପାଖରେ ଆପଣଙ୍କର କ ଜାମ ଥିବ ଶୁଣେ ?

ସ୍ତଓ—ବୋଲବ, ବୋଲବ—ଏବେ—

ଲଦପୃ—ଏବେ କ'ଣ ହେ ? ମୋର ବେଳ ହେଲଣି ମୁଁ ଯାଉଛି ।

[ ପ୍ରସ୍ଥାନ ]

ସଓ—ଜାମାଇଷଣ୍ଡର ଗାଲୁ ! କମ୍ପାଉଣ୍ଡର ଗାଲୁ ! ଆହ୍ବା, ଲକ୍ଷା ଭୂତ ଜସ ପାଇଁ ହେ ? ବେଙ୍ଗଲ ନା ମଣିବାଲ୍ଲ !

ବୃଣ—ଶୁଣ ସ୍ତଓ !

ସ୍ତଓ—କସ ବୋଲଭ ?

ବୃଣ—ଟଙ୍କା ପାଇଁ ରଧା ଦେବୀଙ୍କ ଠାରୁ ଲେଖା ଖଣ୍ଡେ ଅଣି ପାରିବ ?

ସ୍ତଓ—ରଧା ଦେଓ୍ବୀ । ଆହ୍ବା । କ ମାଲକମା ହେ ସେ ! ଏକା ଏକା ଆଂପସପାଇଟି କରୁବାର, ବେପାର କରୁବାର । ଏବେ ମଣିବାଲ୍ଲ ! ଆମ ରହ୍ସ୍ଥା କଳ୍ପ ପାଇଁ କଲ୍ପବାର ନାଇଁ ହେ । ଖାଲ ଆଟକାଲ୍, ପିଣ୍ଡିଓଭ ଆଲ୍ କରୁବାର । ତାକୁ ମେଡା ଅଜା ଅସିବ ।

ବୃଣ—ଓଃ ନମା କଥାର ଜବାବ୍ ଦଅ ।

ସ୍ତଓ—ଦଂ ସପିଦୁ ? ସପିଦୁ କଣ ହବ ହେ ? କଣ୍ଟ୍ରାକ୍ଟର ବାବୁ ଚପ ମତ ଲମ୍ବାରେ ବୋଲ ଭାଗଜରେ ସନ୍ତ ଦଣ ଦେଇଛ । ମଣିବାଲ୍ଲ, ତା' ଉପରେ କସ ହେବେ ଚଲେମ ଲେଖି ଦିନ ହେ ।

ବୃଣ—ଲେଖିନେଇ ସ୍ତ୍ରୀ, ଲେଖିନେଇ । ହେଲେ ସେଥିରେ କ'ଣ ଲେଖିଥ ଜାଣ ?

ସ୍ତଓ—ଉସ ?

ବୃଣ—ଚଟକ କୋଠାଘରର ସ୍ୱର ।

ବର୍ଣ୍ଣ—ଗଲ ?

ଗୁଣ—ହ ବର୍ଣ୍ଣ, କଟକ ବକ୍‌ସିବଜାର ଛକ ଉପରେ ଶ୍ରୀକାନ୍ତର କେଣ୍ଡ଼ିଏ କୋଠା ଉଠୁଚ, ତାହାର ଦାମ୍ ପଚାଶ ହଜାର ଟଙ୍କାରୁ କଣ୍ଟ କମ୍ ହବ ନାହିଁ ।

ବର୍ଣ୍ଣ—ସତେ ? କାଟାକାଟ୍‌ରେ ବାଲିର ଘର ଅଛୁ, ଅଦ୍ଭା ! ଏ ବୁଦ୍ଧି ତେ ତମର ? ଅକଲ୍ ବୁଦ୍ଧି ସମାନେ । ଏବେ ମଣିବାଇ ! ସୁଧା ଦେବ୍ୟୀଙ୍କ ମୁହଁ ଦେଖିଲେ ମୋ ଦେହ ଭିତରେ କସ କସ ହୋଇଯାଉଛି ହେ । ଦଃ ! ଏ ମାଛୁ ଛୁଗାମ୍ !

ଗୁଣ—ହୁଁ । କିନ୍ତୁ ମିଷ୍ଟର ବର୍ଣ୍ଣ, ତୁମର ତ'ଣ କମ୍ ମାଛ ଚୁପ ଅଛି ?

ବର୍ଣ୍ଣ—ଏଁ ସତେ ? ଏବେ ସୁଧା ଦେବ୍ୟୀ ମତେ···

ଗୁଣ—କଓ ବୁଝିପାରୁନା ? ତୁମେ ଭଲେ ସୁଧା ଦେବୀଙ୍କର ସେ ଯୌବନ ଆନନ୍ଦ, ହସ । ଏତେ ବଡ଼ ଘର ଓ ଦୁଃଖରେ ମଧ୍ୟ ସେ ଯେମିତ ତୁମ ସହ କଥାଭାଷା କଲାବେଳେ ହସି ପାରୁଚନ୍ତି···ବେଳେ ଅନ୍ତରରେ କସିବାକୁ ଲାଗୁଚନ୍ତି । ଆଉ କଥା କହିଲାବେଳେ ସେ ଯେଉଁ ସ୍ନେହ ସୁହାଣୀ··· ମିଷ୍ଟର ବର୍ଣ୍ଣ, ଆମକୁ କଣ କିଛି ଅଜଣା ଅଛି ?

ବର୍ଣ୍ଣ—ସତ କଥା ହେ । ଏବେ ତୁମେ କେମିତି ଜାଣିଲ ମଣିବାଇ ! କସ ରାଇଟ୍ ମାନ୍‌ୟାମ୍ ଜାଣିଚ ?

ଗୁଣ—ମୁଁ ସବୁ ଜାଣେ ବର୍ଣ୍ଣ, ସବୁ ଜାଣେ ।

ବର୍ଣ୍ଣ—ଜାଣିଚ ? ଅଦ୍ଭା । ବଡ଼ ଜାଣିବାର ହେ ତମେ ମିଶେ ତାଙ୍କୁ ଆମକୁ ସୁଟେ ସ୍ନେହ ହବାର ନାଁ ··· । ହିଁ ମଣିବାଇ । ତମର ବାଇ ଆମ ପାଖକୁ ସୁଟେ ଛଟି ଦେଇ-ଥିଲା ହେ ।

ଗୁଣ—ଚିଠି ? ଦେଖି ଦେଖି ।

(ଗୁଣ ଚିଠି ଆଣି ପଢ଼ିଲେ)

ଗୁଣ—ପ୍ରିୟ ଗଉଡ଼ବାବୁ,

ଏ ପତ୍ର ପାଇବା ମାତ୍ରେ ମାତ୍ରେ ମୋ ପାଖକୁ ଶହେ ଟଙ୍କା ପଠାଇବେ । ମୋ ବ୍ୟବସାୟରୁ ହଜାର ହଜାର ଟଙ୍କା ରୋଜଗାର କରୁଥିଲେ ମଧ୍ୟ ମୋର ପରିବାର ମୋର ସୁଖ ଶାନ୍ତି ପାଇଁ ପାଞ୍ଚଟଙ୍କାଏ ବି ଖର୍ଚ୍ଚ କରିବାକୁ କୁଣ୍ଠିତ । ମୋ ସ୍ତ୍ରୀ ହେଲେ ବି ସ୍ୱଧା ମୋ କଥା ବୁଝିବେନି । ମନେ ଲମିଶ ଶ୍ରବରେ ମାଣ୍ଡଳେହଲେ ସେ ସୁଖରେ ରହିବ, ଏହାଙ୍କ ତାର ବୋଧହୁଏ ଭଲ ଲାଗେ । ଗୁଡ଼ନ୍ତୁ, ସେ ମୋର ସ୍ତ୍ରୀ । ଆଜ ମୋର ହିନଏ ଜରୋଣ୍ଡ ଦରକାର । ଆପଣ ପିମିତ ଟଙ୍କା ପାଇଁ ହେଲେ ନ କରନ୍ତୁ । ଇତି ।

ଆପଣଙ୍କର

ଶ୍ରୀକାନ୍ତ ଚୌଧୁରୀ

(ପଢିସାରି ଚିଠିଟା ପକେଟ୍‌ରେ ରଖି) ଏ ଚିଠିଟା ମୋ ପାଖରେ ଥାଉ ବଉ ।

ଗଉଡ଼—କଣ କରିବ ସେଠା ?

ଗୁଣ—ମୁଁ ଜାଣେ କ'ଣ କରିବ । ସେଥିପାଇଁ ତମର ବ୍ୟସ୍ତ ହେବା ଦରକାର ନାହିଁ । ଆଚ୍ଛା, ମୁଁ ଆସେ । (ଯିବାପାଇଁ ଉଠୁଥିଲେ)

ଗଉଡ଼—ଆଜ୍ଞେ । କଣ କହୁଥିଲି ତମକୁ ଆଉ କଣ । ହଁ, ମଣିବାବୁ—

ଗୁଣ—(ଫେରି) କ'ଣ ?

ଗଉଡ଼—କାଟାକାମ୍‌ରେ ବାଉଁଶ ଯୋ ଘର ଅଛି, ସେଇ କଣ ମେଢ଼ ଘର ନା ?

ଗୁଣ—କେତେ ଦୂର ?

ରଉ—ହଁ ହେ, ଆମର ଗିମିଶ ଆଡା ଅଛୁ ।

ଗୁଣ—(ହସି) ଓହୋ କୋଠାଘର ? ହଁ ହଁ କୋଠାଘର ।

ରଉ—ବଡ଼ ବେପାର କରିବା ହେ । ଆମ ଉତ୍କାନ୍ତ ଚଳିଥିବ ।
ଘରେ ମାଡ଼ି ଆମ ଜନ ଲୁଚ । ତେଣୁ ସ୍ୱର ଚଳବ ଯେ
ନେମ ମିଳେଣ - ହଁ ।

ଗୁଣ—ଅଚ୍ଛା,—ମୁଁ ଯାଉଛି । (ପ୍ରସ୍ଥାନ)
ରଉ—ଅଚ୍ଛାଲେ । (ଗୁଣ ଚାଲିଗଲା ପରେ) ଜାମାଇଜଣ୍ଡର ବାଛ,
ଓ ଜାମା ଜଣ୍ଡର ବାଛ ! ଆହେ ଲୁହ ଦଉ !
ଭଦ୍ର—(ପ୍ରବେଶ କରି) ଓଃ, ଏତେ ହଣ୍ଡା ଭାଣ୍ଡିକ କରୁଛନ୍ତି ?
ରଉ—ଶୋଷିଗଲଣି ଲୁହ ଦଅ ।
ଭଦ୍ର—କ'ଣ ?
ରଉ—ହଁ ହେ, ଆମ ଉତ୍କଳ୍ପ, ଆମ ଜନପ୍ଲା, ଜାଣ ସୁବୁଦ୍ଧି ଦର
ଧନରେ ଓଦା ହୁ, ଉପେନ୍ଦ୍ରିନିକେ ରାତ୍ରିକର ଖାଇବେଲ
ନା—ମାଇଧନା ଲୁଚ ବୁଝି ନାଇଁ ମୁଣ୍ଡକୁ—ସେତା
ଆଡା—ସମାନେ ଛାଣିପର ଶୋଷିଗଲେ ହୋଇଗଲ ।
ଭଦ୍ର—କ'ଣ ଝାଡ଼ା ?
ରଉ—ହଁ ହେ । ସେତ ଆଡା—ଝାଡ଼ା, ଝାଡ଼ା । ଆମ ଲୁଚ
ଜଇବେ ଶୋଷିଗଲେ ଆଉ ତୁମ ଜାଠାଜାମ୍ଃ, ପୁଣ ଲୁଚ
ଜଇବେ ଝାଡ଼ା । ହଲ ଲୁହ ଦଅ ଜାମାଇଜଣ୍ଡର ରାଜୁ ।
ତୁମକୁ କସ ପିଜା ପାନ ଝର୍ଚ୍ଚ ବେଢ ମ ?
ଭଦ୍ର—ପାଞ୍ଚଟଙ୍କା ଦେବ ।
ରଉ—ଏଁ ପାଞ୍ଚଟଙ୍କା ? ଦ' ସୁଭା ବେଢ ହେ ।

ଉଦୟ—ଏ' ପୂଜା ?

ଗଉ—ନ ହେଲେ ଆଉ ବେଢ଼ାଟି ନଅ ହେ ?

ଉଦୟ—ରଖ ହେ ତମ ପଇସା । (ସବେଗରେ ପ୍ରସ୍ଥାନ)

ଗଉ—ଅବ୍‌ବା ! ଏତେ ଭୂପ କଣ ପାଇଁ ହେ ? ଶୁଣ ହେ କାମା-
ଖ୍ୟାର ଯାତ୍ରୁ ! ଓ କାମାଖ୍ୟାର ଯାତ୍ରୁ !

( ଡାକ ଡାକ ଗଉଙ୍କର ପ୍ରସ୍ଥାନ )

---

## ତୃତୀୟ ଦୃଶ୍ୟ

(ଡାକ୍ତରଖାନାରେ ଗୋଟିଏ କୋଠରୀ—ଟେବୁଲ, ଚଉକି ପଡ଼ିଛି । ଡାକ୍ତରବାବୁଙ୍କ ଅଫିସରୁମ୍—ଡାକ୍ତର ବସିଚନ୍ତି ଗୋଟିଏ ଚଉକିରେ ଏବଂ ପାଖରେ ଠିଆ ହୋଇଚନ୍ତି କମ୍ପାଉଣ୍ଡର ଉଦୟନାଥ । )

ଡାକ୍ତର—ଦେଖ ମିଷ୍ଟର ନାଥ ! ଏଇଟା ଗାଁଟିକର ଜନପ୍ରିୟ ଜନତା ନମ୍ବ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚ ନୁହେଁ । ଡାକ୍ତର ବାଇଚଙ୍କରଙ୍କ ଚକ୍ଲାନ ମନ୍ଦିରର ଏକ ଅଂଶ ମାତ୍ର । ଏଠି ତୁମର ଡ୍ରାଙ୍କ ଉତ୍ସବ ଭଳା ଶବର ଫଟା ସିମେଣ୍ଟ ଛାତରେ ମୋଟେ ଖାପ ଖାଉ ନାହିଁ ।

ହରପ୍ର—ଭୁଲ ହୋଇଗଲା ସାର୍ ! ଜଣାଶୁଣାର ସୀତାସ୍ୱେସ
ନାଟକରେ ଜଟାୟୁ ପାର୍ଟ ପ୍ରକ୍ସି ଦେଇ ନାଟକର
ଲଣ୍ଡାଗୁଣ୍ଡାଙ୍କ ଏ ଦେହରେ ରକ୍ତ ମାଂସର ସାଇକେଲ ଟିଉବ
ପଠାଣଙ୍କ ଲଷି ପାଉଛି । ସେଥିପାଇଁ କେତେବେଳେ
କମିତ ଲଣ୍ଡାଗୁଣ୍ଡାକ—

ଡାକ୍ତର—ନାଟକପ୍ରି ହୋଇ ଯାଉଛ ?

ହରପ୍ର—ସାର୍ ।

ଡାକ୍ତର—ଇଡିଅଟ୍, ଏଇଟା ସ୍ୱାଧୀନ ଚଉଅ ଯୁଗ, ବୁଝିଲ ? ଏଠି
ଦେଶ ଓ ଜାତିପାଇଁ ସାମାନ୍ୟ ସ୍ୱାର୍ଥତ୍ୟାଗ ଦରକାର,
ମନେ ରଖିବ ?

ହରପ୍ର—ମନେ ରଖିବ ସାର୍ ।

ଡାକ୍ତର—ମନେ ରଖିବ ? କ'ଣ ମନେ ରଖିବ ?

ହରପ୍ର—ଆପଣ ଯାହା କହିଲେ ।

ଡାକ୍ତର—କ'ଣ ମୁଁ କହିଲି ?

ହରପ୍ର—(ହସି) ସାର୍, ଏତେ ଶୀଘ୍ର ଆପଣ ବି ଭୁଲିଗଲେ,
ଆପଣ କ'ଣ କହିଥିଲେ ?

ଡାକ୍ତର—ଏଁ, ମୁଁ ଭୁଲିଗଲି । ଲଭଜ୍‌ଲେସ ।

ହରପ୍ର—ସାର୍ ।

ଡାକ୍ତର—ତୁମ ଦେଇ ଖାଲି ହିଟିବ ନାହିଁ ।

ହରପ୍ର—ନା ସାର୍, ସେ ଦଉଡରେ ବେଶ ତାଲିମ ପାଇଛି ।

ଡାକ୍ତର—ତୁ ମିଷ୍ଟର ନାଥ !

ହରପ୍ର—ସାର୍ ।

ଡାକ୍ତର—ବକ୍‌ବକ୍ ବନ୍ଦ୍‌କର । ନଣ ଏ ବହିଟା । ଜଲ୍ଦି ନମ୍ବରଣ
ତୁମର ପାଖରୁ ଆଉ ନମ୍ବରଣ କର ।

ଲଟପ୍—ରମାବୋଲୁ ମୋତେ ଆଉ ବଡ଼େ ଘୂରେଇବ ନ ପାରୁ !

ଡାକ୍ତର—ତାଙ୍କୁ ମଧ୍ୟ ଗୋଟିଏ ବଟିକା ଖୁଆଇଦଅ, ଆଉ ବାହା-
ପ୍ରତି କାହାର ଆକର୍ଷଣ ରହିବ ନାହିଁ । କେବଳ ନାହାରକୁ
ଆଉ କିଛି କହିପାରିବେ ନାହିଁ । ଖଅ ଖାଅ—

[ବାହାକୁ ପାଟି ଶୁଙ୍ଘିବ ଲେକଟ ଉଠିବର]

ବୃଦ୍ଧ—କମାଣ୍ଡରର ଗାନ୍ଧୁ ! ଦଇ ହେ କମାଣ୍ଡରର ଗାନ୍ଧୁ ! କସ
ହେ ଏତା ? କ ଜେକି ଗାଲନ୍ତି ଦେ ଏତା ? ରମାଚନ୍ଦ୍ରା
ରମାଚନ୍ଦ୍ରା [ ଡାକ୍ତରଙ୍କୁ ଦେଖି ] ଡାକ୍ତ୍ରାବାବୁ,
ନମାସ୍କାରମ୍ ଡାକ୍ତ୍ରାବାବୁ !

ଡାକ୍ତର—ନମସ୍କାର, କୁଆଡ଼େ ଆସିଲେ ?

ବୃଦ୍ଧ—ରମାଚନ୍ଦ୍ରା ! କସ ଅଛ ଗାଲନ୍ତି ମରେ ? ଦ' ଟଙ୍କା ଦ' ପୁଜା
ତାକୁ ଦେଇକରି କ ଲଉ ଯା ସେ ସମାନେ ଗିମିଳ ଆବା
ଶୋଷିବକୁ ହଲଉ···ଆମ ଉଦ୍ଧାର ।

ଡାକ୍ତର—କ'ଣ ହେଲା ?

ବୃଦ୍ଧ—ନାହିଁ ଡାକ୍ତ୍ରାବାବୁ, ଆମ କାମ୍ପାଉଣ୍ଡର ବାବୁ ଭଉସ
ସମାନେ ଲଖ ଦେବ ଦେଇକରି । ଆମ ଗୁହାଳା—
ମୂଳୁଧା ଦର ଜ୍ଞାନରେ ଉବାନ୍ତୁ, ଲଜେଣ୍ଡେ ପାଣ୍ଡ୍ରିକରି
ଖାଇଦେଲା ନା···ସେତ୍ତ ଅଛା । ଗଦରଟା ଶୋଷିବକୁ
ହୋଇଗଲେ । କମାଣ୍ଡରର ବାବୁ ଦ' ଟଙ୍କା ଦ' ପୁଜା
ଦେଇକରି ସମାନେ ରଙ୍ଗାପାଣି ଭାଣ୍ଡରେ ଦେଇ
ଛଡେଇଲା ଆଜ୍ଞା । ଗିମିଳ ଆବା ଶୋଷିବକୁ ହଲଉ ।
କସ ହେ ଏତା କାମ୍ପାଉଣ୍ଡର ବାବୁ ? ରମାଚନ୍ଦ୍ରା,
ରମାଚନ୍ଦ୍ରା !

ଡାକ୍ତର—କ'ଣ ମିଷ୍ଟର ନାଥ ! ଡାକ୍ତରଖାନା ଔଷଧରେ କେଣ୍
ବ୍ୟାଙ୍କ ବ୍ୟାଲାନ୍‌ସ ଭଳି ଖୁଜୁଛ ?

ଲବଦ୍ୱ—ନାଁ ସାର୍‌, ମୁଁ—

ଡାକ୍ତର—କ'ଣ ମୁଁ ?

ଲବଦ୍ୱ—ସେ ମିଛ କହୁଛନ୍ତି ସାର୍‌ ।

ଜ୍ୟୋ—ସ୍ୱମାସ୍ୱାହା, ସ୍ୱମାସ୍ୱାହା ! ମୁଁ ମିଛ କହିଲି ? ହଉଏ ମୁଁ
ମିଛ କହିଲି ? କାହିଁ ତମ ସରିତା ଚୂର୍ଣ୍ଣ କଲବଣ ।
ଚୁପ—ଚୁପ ହେ ! କହିଲ, ମୁଁ ମିଛ କହିଲି, ଡ'ଟଙ୍କା
ଡ'ସୁଜା ନେଲଗଲ, ଚାର କଥା କହୁଚ, ଆଖି
ଫୁଟିପିବଣ—ହାଁ !

ଡାକ୍ତର—କ'ଣ କମାଣ୍ଡର ବାବୁ ?

ଲବଦ୍ୱ—ନାହିଁ ସାର୍‌, ମୁଁ ଗୋଟାଏ ଟନେଲ୍ ଭାବୁ ଅଛି ବେବ
ବୋଲି କହୁଥିଲି ।

ଜ୍ୟୋ—ସ୍ୱମାସ୍ୱାହା, ସ୍ୱମାସ୍ୱାହା ! ଟାନେଲ୍ ? ଅବ୍‌-ବା-ବା—ଏ ପାପୀ
ନ୍ୟକନ୍ଦ ? କେତେ ମିଛ କହୁଚ । ଡାକ୍ତ୍ର, ବାଲ୍ !
ସମାନେ ଡ'ଟଙ୍କା ଡ'ସୁଜା—ଦେଖିବ ନା ? ହେଇଟି ହେଇଟି
ବେଷ୍ଟକଟ ଡାକ୍ତ୍ର ବାଲ୍—[ଛିଣ୍ଡି କାଢ଼ି ଦେଖେଇଲେ]
ଖାଲି ସମାନେ ରକମପାଣି । ଏତା ମତେ ଦେଇଥିଲ ଡ'ଟଙ୍କା
ଡ'ସୁଜା ଡାବୁ ଟୋପି ମାରିଦେଲଣି...ଆଜ୍ଞ ଜମ ? ହଲ୍
ହଳ, ଘିଅ ଘିଅ, କଞ୍ଚ, ଲକ୍ଷ, ଏତା—ଭସ ହବ ଆମର !
ଭାତ୍ର, ଭାତ୍ର, ଆମର ଡ'ଟଙ୍କା ଡ'ସୁଜା ଡାବୁ କାଢ଼ିକଚ ।

ଡାକ୍ତର—କ'ଣ କମାଣ୍ଡର ବାବୁ ? କ'ଣ ହଉଛି ଏ ସବୁ ?
ନନ୍‌ସେନ୍‌ସ ।

ଜ୍ୟୋ—ନବ ଧବ ଆଜ୍ଞା ? ଦୋଷା ପାନ । କାଢ଼ ହେ—ଖର୍ଚ୍ଚ

ଭାଡ଼ । ନାହିଁ ତ ଦେଖୁ କରନ୍ତେବ, ତ ! ହାଁ— । ମଣେ
ସାମାନ୍ୟ ଜ୍ୱରଟ ନ' ?

ଡାକ୍ତର—ମିଷ୍ଟର ନାଥ ! ଯାଅ ଓଷଧ ଫେତଣ ଚାକର—
ଜଲ୍‌ଦି ଯାଅ ନନ୍‌ସେନ୍ସ । ହଁ ସତ୍ତ ବାବୁ ! ଆପଣ
ଯାନ୍ତୁ ତାଙ୍କ ପାଖରେ ଓଷଧ ନେଇଯିବେ ।

ସତ୍ତ—ଆଜ୍ଞା ଯେ । [ଯାଉ ଯାଉ ଫେରି] ଏତା ମୁଁ ରଖିବ ନା ?
[ଔଷଧ ଶିଶି ଦେଖାଇଲେ]

ଡାକ୍ତର—ହଁ ରଖନ୍ତୁ ।

ସତ୍ତ—ବୁଝିଲେ ନା ଡାକ୍ତରବାବୁ ! ଆମର ବନ୍ଧୁସ୍ଥା···ଆମର
ଜନ୍ମ ମୋ ଉପରକୁ ଯୋ ଦୃଶ ଯୋ ଛଷା—ଅସ୍ଥା-
ମା ନ ପାଇଟି, ନ ଦୋକାପାନ । ବ୍ୟମାସ୍ଥା !
ବ୍ୟମାସ୍ଥା ! ଝମ୍ପା, କୂର୍ଚ୍ଚ ଆଜ୍ଞା, ଓଧ୍ରୁନାହୁ—
ନାମାସ୍କାରମ୍ ଡାକ୍ତରବାବୁ ! [ଚାଲିଗଲେ]

ଶ୍ରୀକାନ୍ତ—[ବାହାରୁ] ମେ ଆଇ କମ୍ ଇନ୍ ଡକ୍ଟର ?

ଡାକ୍ତର—ୟେସ୍, କମ୍ ଇନ୍—(ପ୍ରବେଶ କଲେ ଶ୍ରୀକାନ୍ତ) ଏଏ,
ଶ୍ରୀକାନ୍ତ ! ଆ ଭଲ, ଆ ବସ୍ । ଠିକ୍ ସମୟରେ ଆସି-
ଯାଇଚୁ । ଖାଲି ବଡ ଦୁଃଖର ପଡ ଜାଣିବାକୁ ବାଧ
ହଉଚି, ମୋର ଏ ମହା ପରୀକ୍ଷା ପାଇଁ ତୁ ସମ୍ପୂର୍ଣ୍ଣ
ଅଯୋଗ୍ୟ ।

ଶ୍ରୀକାନ୍ତ—କ ପରୀକ୍ଷା ?

ଡାକ୍ତର—ମୋ ନବ ଆବିଷ୍କୃତ ଔଷଧ···ଜନ୍ମାନ୍ତର ପ୍ରବଣ ।

ଶ୍ରୀକାନ୍ତ—ମୁଁ ଦୁଃଖ ପାଉନାହିଁ ଦୁଷ୍ଟ । [ବସିଲା]

ଡାକ୍ତର—ବଳ ବଳ, ତୁ ବସ,—ଏଏ ଅଛୁ କେଉଁଠାରେ ?

ଲଦସ୍—ସାହ୍ୟ, ମୁଁ ଅଛୁ ।

ଡାକ୍ତର—ନନ୍‌ସେନ୍‌ସ ।

ଜଦୟୁ—ସାର୍‌ !

ଡାକ୍ତର—ତୁମେ ଜାଣ ଶ୍ରୀକାନ୍ତ ମୋର ବନ୍ଧୁ, ପିଲାଦିନର ସାଥି !

ଜଦୟୁ—ଜାଣେ ସାର୍‌ ।

ଡାକ୍ତର—ଆଜି କଣ୍ଠ୍ ଚର୍ଚ୍ଚା କରିବ ଲଗାଏ, ସେ କଥା କେଣ ଜାଣିଥିବ ?

ଜଦୟୁ—ହଁ ସାର୍‌ ।

ଡାକ୍ତର—ଯାଅ ବନ୍ଧୁ ହ୍ୱିସ୍କ୍ ଆଉ ଚପି ଆଣ ।

ଜଦୟୁ—ସାର୍‌, ବନ୍ଧୁପିବାର ସିଗ୍ରେଟ କେତେ ଖଣ୍ଡ ଆଣିବି ?

ଡାକ୍ତର—ଓ ନନ୍‌ସେନ୍‌ସ, ଯାଅ ।

(ଜଦୟୁ ବ୍ରଜରେ)

ଶ୍ରୀକାନ୍ତ—ମୋର କପ ଦରକାର ନାହିଁ ଡାକ୍ତର—ମୋର ଆଜି ହୁଇସ୍କି ବେଶୀ ମଦ ଦରକାର । ପ୍ୟାଟ ଇଜ୍‌ ମି ରୁଲ—ହୋଲ ରୁଲ ।

ଡାକ୍ତର—ଶ୍ରୀକାନ୍ତ ! ତୋର ସବୁ ବେଶ୍ୟାବୁଦ୍ଧି କୁ କ'ଣ ପୋଷୁ ଖାଇ ପାରିଲୁଣି ? ହଜାର ଥର କହିଲି ମଦ ଖାଆନା— ଅଥଚ ତୁ ମୋ କଥା ଶୁଣିଲୁନ । କ'ଣ ପାଇଛୁ ତୁ ସେଥିରୁ ?

ଶ୍ରୀକାନ୍ତ—କ'ଣ ପାଇଛି ମୁଁ ସେଥିରୁ ? କ'ଣ ପାଇବା ସେଥିରୁ ଉଚିତ ? ଲୋକର ଧ୍ୟାନ ଆଜି ବନ୍ଦ ଥିଲେ ତୋ ଉତ୍ତର ତୁ ଅବଶ୍ୟ ପାଇଥାନ୍ତୁ । କିନ୍ତୁ—

ଡାକ୍ତର—ହଁ, ଚନ୍ଦ୍ରାକୁ ଗୁହ ସାକ୍ଷୀ, ସେ ବି ତ ତୋ'ଠୁ କମ ପିଉ ନ ଥିଲେ ?

ଶ୍ରୀକାନ୍ତ—ହଁ, ସେ ବି ପିଉଥିଲେ । ସେଥିପାଇଁ ସେ ବି ତୋ

ଆଖିରେ ମୋ ଭଲ ମାଗାଲ । କିନ୍ତୁ ବିବେକାନନ୍ଦ—ସ୍ପ-
ଷ୍ଟ ମୋ ସ୍ୱଚ୍ଛଷ୍ଟ । ସ୍ୱାମୀ ବିବେକାନନ୍ଦ, ସେ କ'ଣ କହୁ-
ଚନ୍ତି ? ପୃଥିବୀରେ ଏମିତି କିଛି ଜିନିଷ ନାହିଁ, ଯାହା ଖ
ଅପବିତ୍ର···ଯାହାକୁ ମଣିଷ ଖାଇବ ନାହିଁ ବା କରିବ ନାହିଁ ।
ମଦ, ମାଂସ, ମାଛ ଖାଇବା ପାପ—କିନ୍ତୁ ଚୋର ଫଳ
ଖାଇବାଟା ଖୁବ୍ ପୁଣ୍ୟ···କୁହେଁ । ଗଛର କଣ ଜୀବନ
ନାହିଁ ? ଗୋଟିଏ ଫଳର ମଞ୍ଜିରୁ ଲକ୍ଷ ଲକ୍ଷ ଗାଛନ୍ତି ଗଛ
ତିଆରି ହୋଇ ପାରଥାନ୍ତା—କିନ୍ତୁ ତା କଣ୍ଢକାକୁ ଖୁ
ଚଳୁନ । ସେ ଚୋର ପାପ କୁହେଁ ।—ମହାପୁଣ୍ୟ ।
ଠାକୁର—ହଁ, ଅସୁରମାନେ ଦେବତାଙ୍କ ଉପରେ ଅତ୍ୟାଚାର
କଲାବେଳେ ଏମିତି ତୋ ଭଳି ଦେବଳ ସୂତ୍ରର ଆଶ୍ରୟ
ନେଇ ନିଜକୁ ସାନ୍ତ୍ୱନା ଦେଉଥିଲେ । ତାଙ୍କ ଉଦରରେ
ମଦ ଆଉ ଦୁଧ ଭିତରେ ମଦଟାଇ ଉପାଦେୟ ।
ଶ୍ରୀକାନ୍ତ—ନିଶ୍ଚୟ ଉପାଦେୟ । ତୁ ଡାକ୍ତର, ମୋ କଥାଟା ତୋର
ଅବିଶ୍ୱାସ ହେବ । ମୁଁ କିନ୍ତୁ ବହୁ ଆମେରିକାନ ଶ୍ୟାମ୍‌ପେନ
ଡାକ୍ତରଙ୍କ ଅଭିମତ ନଜର ଦେଇ ସ୍ଥିର୍ କରିଦେଇ
ପାରିବି ଯେ, ଗୋଟାଏ ପୂରା ଡ୍ରମ୍ବିକାରେ ଯେତେ ଜର୍ମସ୍
ଥାନ୍ତି, ତା' ଅପେକ୍ଷା ବେଶୀ ଥାନ୍ତି ଗୋଟାଏ ଟୋପା ଦୁଷ୍ଟା
ଦୁଧରେ । ମଦ ପଦ ଖୁବ୍ ବେଶୀ ନ ଖାଇ, ତାର
ଏଫେକ୍ଟ ଫେବଳ ବାରଣ୍ଡା କିମ୍ବା ତୋର ଭଳି, କିନ୍ତୁ
ବା ଦୁଧ ଖୁବ୍ ବେଶୀ ଖାଇଦେଲେ ତାରେ ଅନ୍ତତ
ମାସେ ଓଟସ୍ୱଞ୍ଜୀ ରହିବାକୁ ପଡ଼ିବ, ହୁଇଚ୍ ଇନ୍ ମୋର
ହାରମ୍ପୁଲ ଉତ୍ତର ! ଆମେରିକା ପାର୍ଲି କୁଇନ୍‌କେଲଟଙ୍କ
ପ୍ରସ୍ତାବିତ ଯୋଜନା, ୧୯୧୮ରୁ ୧୯୨୮ ପର୍ଯ୍ୟନ୍ତ ଘଟି

ଫନବର୍ଡ଼ ଲାଜ ଦୂର ଅମେରିକାରୁ ତ୍ରାଣ ହୋଇଛନ୍ତି ।
କିନ୍ତୁ ଶେଷରେ ପଇସାଟା ଭଣ ଯେବ ? ଡ୍ୟାମ ଫେଲସ୍ୱୋର,
ଜାଲର ନେକ୍ସ ଅଜନ୍ ମୋର ହେନ୍ ଏ ଡକ୍ଟର ଦାଲ ।

ଡାକ୍ତର—ହଁ, ତୁମେ ଆଜ କଣ ? ଶ୍ରୀକାନ୍ତ, ତୋର ଚୋଖ ଜଳୁଛି ଯେ—

ଶ୍ରୀକାନ୍ତ—ଏଁ ସବ, ଲେଟ୍ ଅପ୍ ଜମ୍ ଟୁ ଓ ଗଏଷ—ଡକ୍ଟର, ମନେ କରୁ ଟଙ୍କା ଦେଲ୍ । ମୋ ପାଖରେ ଏକଦମ ଛଟେଯା ନାହିଁ । ଆଜ୍ ମୋର ନିଜେ ବେଶୀ ମଦ ଦରକାର ଅଛି···କାଶଟା ଖୁବ୍ ବଢ଼ି ଯାଇଛି ।

ଡାକ୍ତର—ଆଉ ମଦ ଖାଇବୁ ? ଶ୍ରୀକାନ୍ତ ! ବନ୍ଧୁ ଭାବରେ ମୋର ମତେ ଏତେକ କହିବାର କଥା, ତାକୁ ଛାଡ଼ ଦେ ।

ଶ୍ରୀକାନ୍ତ—ମୁଁ ତାକୁ ଛାଡ଼ିଦେଇ ପାରେ ଡକ୍ଟର; କିନ୍ତୁ ସେ ମତେ ଛାଡ଼ିବନି । ଉଇସ୍କି ! ଲଭ୍ ମ୍ୟାନ୍ ଏସେନ୍ସ ଲଭନ୍ ନେଷ୍ଟ୍, ବଟ୍ ଲଭ୍ ମ୍ୟାନ୍ ନଟ୍ ଏସେନ୍ସ ଲଭର ଫ୍ରେଣ୍ଡ୍ ହେଲପ୍ । ଦେ ମତେ କିଛି ଟଙ୍କା ଦେ ଡକ୍ଟର, ଲେଟ୍ ମି ଦ ଆଲବ ପ୍ରମ ମାଇ ଓଲଜ୍ ।

ଡାକ୍ତର—ଓଲଜ୍ ନୁହେଁ ଶ୍ରୀକାନ୍ତ, ତେଣୁ··ମୃତ୍ୟୁ ।
ଶ୍ରୀକାନ୍ତ—ମୃତ୍ୟୁ ?

ଡାକ୍ତର—ହଁ ଶ୍ରୀକାନ୍ତ, ସୁଧା ଦେବୀ ତୋ ଛାତିର ଏକ୍ସ-ରେ ପ୍ଲେଟ ମୋ ପାଖକୁ ପଠେଇଥିଲେ; ଆଜ ସେଥିରୁ ମୁଁ ତାହା ଦେଖୁଛି—

ଶ୍ରୀକାନ୍ତ—କ'ଣ ଦେଖିଛ ଡାକ୍ତର—କଣ ଦେଖିଛ ?

ଡାକ୍ତର—ଟିଉବରକୁଲୋସିସ୍ ! ବୋଥ୍ ଲଙ୍ଗସ୍ ଏଫେକ୍ଟେଡ୍ ।

ଶ୍ରୀକାନ୍ତ—ଟିଉବରକୁଲୋସିସ୍, ଟିଉବରକୁଲୋସିସ୍ । (ହସିଲେ)

ଦେଖ ଡ୍ରିଙ୍କ୍ ଏଣ୍ଡ ଟିଉବରକ୍ୟୁଲସିସ (ବସିଲେ)
ଆଉ ନଣ୍ଡ ଲଟ୍ ହରଗଲ, ଆଉ ଖଲୁ ଲଟ ଉଲ୍ଟଗ । ମଟେଚ
କଳୁ ଟଙ୍କା ଦେଇଲ୍ ଜାଗଲଧ । ମୁଁ କେତେକ୍ଷଣ ଅନୁଭବ କରୁଥାଏ !

ଡାକ୍ତର—କହୁଥାଏ ନା ମରୁଥାଏ ? ଗୋଟାଏ ଟୋପା ମଦ ପେଟ
କୁ ଆଉ ଗଲେ, ତା ହେଲେ ଟୋଗ ବଞ୍ଚିବାଟା ଅସମ୍ଭବ ।

ଶ୍ରୀକାନ୍ତ—ଜାଣି, ମଦ ନ ଖାଇ ଏଇ ମୁହୂର୍ତ୍ତରେ ମରିବା ଅପେକ୍ଷା
ମୁଁ ବରଂ ମଦ ଖାଇ ଆଉ କେତେକ୍ଷଣ ବଞ୍ଚିବା ଲଗି ।

ଡାକ୍ତର—ଶ୍ରୀକାନ୍ତ, ଲୁ ବୁଝିବାକୁ ଚେଷ୍ଟାକର । ଜୀବନଟାକୁ ଏତେ
ନଷ୍ଟ ଭାବରେ ତୁ ଶେଷ କର ନା । ତୋର ବାପ, ତୋର
ସ୍ତ୍ରୀ ତୋର ପୁଅ—

ଶ୍ରୀକାନ୍ତ—ଓଃ ଡ୍ୟାମ ଇଟ୍ ଅଲ—ଡାକ୍ତର ଦେଖ ତ ଏ ସାମାନ୍ୟ
କଥାଟା ତୁ କପିଣ ବୁଝିପାରୁନୁ, ମୁଁ ଜାଣେଣ ବୁଝିପାରୁଛି ।
ମୋ ଭଳି ଗୋଟାଏ ଲୋକ···ଯାହାର ବୁଦ୍ଧି ଅଛି, ଜ୍ଞାନ
ଅଛି, ଚରିତ୍ର ଅଛି, ଡାକ୍ତର ଏଜୁକେଟେଡ୍, ଡାକ୍ତର
ଟେଲେଣ୍ଟେଡ୍-ସେ କାହିଁ ମଦ ଖାଉଛି ? ଖାଲି ସେତିକି
ନୁହେଁ, ମଦ ପାଇଁ ସାଧାରଣ ସ୍ତ୍ରୀ, ଭଲ ଭଲ ପୁଅକୁ
ଦୂରେ ଘୃଣେଇ ମାରି ପାରୁଛି । ଡକ୍ଟର, ଆଉ ଡାକ୍
ଷ୍ଟେଟ୍ ଷ୍ଟୁଟ୍ ଅନ୍ ଦର ଫେସ୍ ।

ଡାକ୍ତର—ଶ୍ରୀକାନ୍ତ—!

ଶ୍ରୀକାନ୍ତ—ମୋର ଜଜର ରେଜଟାର ହଜାର ହଜାର, ଲକ୍ଷ ଲକ୍ଷ
ଟଙ୍କାରୁ ସାମାନ୍ୟ କେଇଟା ଟଙ୍କା ମଧ୍ୟ ସେମାନେ ମତେ
ଦେବେ ନି—ମୋର କଷ୍ଟ ସମୟ ବଞ୍ଚିବା ପାଇଁ ମଧ୍ୟ
ନ୍ଦେ !

ଡାକ୍ତର—ଶ୍ରୀକାନ୍ତ ! ତୁ ପାଗଳ ହୋଇଯିବୁ ଶ୍ରୀକାନ୍ତ—ତୁ ପାଗଳ ହୋଇଯିବୁ ।

ଶ୍ରୀକାନ୍ତ—ଓଃ, ହେଲ୍ ଉଇଥ୍ ଇଜ ଡର୍କ୍‌ନେସ । ଟିର ମି ମଜ ଫର ଏ ଜଉ । କେଇଟା ଟଙ୍କା ନଗଦ ମତେ ଦେଇ ପାରୁନୁ ? ତୁମେ ସମସ୍ତେ ମୋର ମରଣଟାର ସ୍ୱଂଚ ? ମୋର ମୁଣ୍ଡଟା କଣ ହୋଇଯାଉଛି । ଡକ୍ଟର । ଡକ୍ଟର ପ୍ଲିଜ୍—

( ଟେବୁଲ ଡ୍ରୟାରରୁ ଟଙ୍କା ନେବାକୁ ଚେଷ୍ଟାକଲା ଶ୍ରୀକାନ୍ତ …ଡାକ୍ତର ହାତକୁ ଧରିନେଲେ )

ଡାକ୍ତର—ଶ୍ରୀକାନ୍ତ !

ଶ୍ରୀକାନ୍ତ—(ଟଙ୍କା ଛାଡ଼ି ଧରି) ଓଃ ଡକ୍ଟର, ଲିଭର ଇଜ୍ ଗନ୍—

ଡାକ୍ତର—ଶ୍ରୀକାନ୍ତ ! ସେ ଟଙ୍କା ରଖ ଶ୍ରୀକାନ୍ତ…ସେ ଟଙ୍କା ତୁ ନେଇ ପାରିବୁ ନା—ରଖ କହୁଛି…ରଖ—

ଶ୍ରୀକାନ୍ତ—(ଉତ୍ତେଜିତହୋଇ) ଓଃ କାନ୍ତ ! ଲେଭ୍ ମି—ଅଲ ଦେ, ଲେଭ୍ ମି ଏଲୋନ୍ । ଓଃ କାନ୍ତ …ବ୍ରୁଟ ।

(ବୁଲିଯାଉଥିଲେ)

ଡାକ୍ତର—ଶ୍ରୀକାନ୍ତ ! ତୁ ଯା ଶ୍ରୀକାନ୍ତ, ଯା—ତୋର ଯାହା ଇଚ୍ଛା ହେଉଛି ତୁ ତାହା କର ।

ଶ୍ରୀକାନ୍ତ—(ଫେରି) କାନ୍ତ, ତୁ ମୋତେ କ୍ଷମା କରିବୁ କାନ୍ତ, ତୁ ମୋତେ କ୍ଷମା କରିବୁ ।

ଡାକ୍ତର—ଶ୍ରୀକାନ୍ତ ।

ଶ୍ରୀକାନ୍ତ—ଏ ଲାଇଫ ଇଜଥ୍ ଗ୍ରେଟ ଅପିରଚୁନିଟି ବ୍ୟାଟ ଏଣ୍ଡସ୍ ଇନ୍ ଡିସାଷ୍ଟର ଟ୍ରାଜେଡି, ଫାଇନାଲ ଟ୍ରେଡ୍ ।

# ଚତୁର୍ଥ ଦୃଶ୍ୟ

[ ଗାଁ ପାଖରେ ସନ୍ଧ୍ୟାକାଳରେ ଗୋଟିଏ ସ୍କୁଲ ଚଉପା-ସହିତ ଅଗଣା—ମୃଣମୟୀ ଅପେକ୍ଷା କରୁଛନ୍ତି ବାବାଙ୍କୁ—କିଛି ସମୟ ପରେ ଆସିଲେ ଜଣେ ଆରଦଳୀ—ହାତରେ ମଦବୋତଲ ଲଣ୍ଠନ ଧରିଛି—ଦୂରରୁ ଚଇତ ପର୍ବର ବାଦ୍ୟ ଶୁଣାଯାଉଛି । ]

ଦୁମ୍ବା—ସାଜ୍ଞ ।

ମୃଣ—ଏବେ କ'ଣ ହେଲା, ଖଓ ବାର୍ତ୍ତା ?

ଦୁମ୍ବା—ବାବୁ, ମୁଇଁ ତାକୁ ଜଙ୍ଗଲ ଭୁଲ ତାକୁ ଜଗିଥିଲୁ—ସେ ସାଙ୍ଗ ଢାଙ୍ଗ୍ରା ଢାଙ୍ଗ୍ରାରେ ଅଛନ୍ତି । ଦେଉଳରେ ଅଛନ୍ତି । ଛୁଟି-ଛୁଟି-ଧାଇଁଧାଇଁ ଜଣ ଆଉଛି ।

ମୃଣ—ହିଁ ଆସୁ, ଚିନ୍ ଅଛୁ । ହିଁ, ଆଜ ଯାତ୍ରା କଲେକ୍ସନ ଅଣି-ବାକୁ ଆଣିଚ ନା ନେ ?

ଦୁମ୍ବା—ଅଣିକ ନାହିଁ ଜନ ପାଇଁ ବାବୁ ? ବୁଲ ଘର ମୋକେ ପଇସା ଦେଲ ।

ମୃଣ—ଆଜେ ଭଲ ମାଲ ଆସିଚୁଟି ?

ସୁମା—ହଇ ସାନ୍ତ, ଚାଲରେ ଭଲ୍‌କା ଆସିନ୍ତ ।

ବୃଣ—ହଇ ହଉ, କୁ ଯା—ନେସଫଟେ ଲୁଚକର ଥିବୁ···ମୁଁ ଡାକଲେ ଆସିବୁ···ବୁଝିଲୁ ? ହଁ ଶୁଣ୍, ମୁଁ ଯାହା କହର କହବାକୁ ମନେ ରହୁଚୁନା ବେ ?

ସୁମା—ଜସ୍, ଖଣ୍ଡୋଏଁ ଭୁଲନ ସାଙ୍ଗ ? କୁଇ ଯେନ୍‌ପି କା କଥାଲ୍ ଘବୁ ମୁଁ କଉସି ।

ବୃଣ—ହଇ ହଉ, କୁ ଯା—ଯେଉଠି କହିଥିବୁ । [ ସୁମା ପ୍ରସ୍ଥାନ ]

ଭର୍ତ୍ତ—[ ପ୍ରବେଶକରି ] କଅଣ ହେ ମଣିବାଲୁ ! ଏତେ ସକାଳୁ କଅଣ ଶେଷି ଉଠେଇଲ ?

ବୃଣ—ଶୁଣ ଭର୍ତ୍ତ, କଥାଟା ହିଅଣ ଗୁଢ଼ । ତା ନ ହେଲେ ଆମର ସବୁ ମୁଣ୍ଡ୍ ପାଣି ହୋଇଯିବ । ଆଉ ତା ସାଙ୍ଗେ ସାଙ୍ଗେ ତମର ଶ୍ରଧା ଦେଖାକୁ ପାଇବାର ଆଶା ମଧ୍ୟ ଚୂର୍ଣ୍ଣ ଆକାଶରେ ମିଶେଇଯିବ ।

ଭର୍ତ୍ତ—ମଣିବାଲୁ ! କଅଣ କହୁଛ ତମକୁ ମୋ ହେଉଁ ଗୋଟେ କହିବାର ଅଛି ହେ । ଶ୍ରଧା ଦେଓ୍ୱା ! ଅହା-ହା ହା ତାର ମାୟା ଭରା ବେଳକୁ ମୋର ଏତ ଖବର ଦାଣ୍ଡଭୂଟା ଜସ ଜସ ହୋଇଯାଉଛ ହେ । ଯୋ’ ତା କଲବ ଖେଳା ଦେଖ ପ୍ରିନ’ ତମକୁ ମାଷ ଶ୍ରଧା ଦେଓ୍ୱା ଆଉ ମୁଁ···ବୁଝିବ ନା ? ସେ ସନ୍ଧଭଟା ତମକୁ ଦେଇଥ ହେଲେ କହିବାର ଅଛୁ । ଜାଣିଚ ନା ? କଇଥ··· ଭଇବ ? ନାହିଁ ହେ କଇବ ନ । ତମେ ଖାଲି ହୃଷ୍ଟ କହିବ । ସମାନେ ଦଣଦନ ହେବ ସ୍ୱଦେଶେ ମତେ ନତ୍ତା ହଉନ ହେ । ଧଡ଼ାବେଳେ ଶ୍ରଧା ଦେଓ୍ୱାଙ୍କି ସ୍ୱପନରେ ଆଖା ଦେଖୁଛ ।

ସୁଣ—ଶୁଣ ସର୍ଓ—ସେଇ କଥାଟି ମୁଁ କହୁଛି । ସୁଧା ଦେବୀଙ୍କ
ଜନ୍ମଦିନରେ ତୁମେ ନିଶ୍ଚିନ୍ତ ଥାଅ । ଆଚ୍ଛା ଶୁଣିବ ?

ସର୍ଓ—କୁହ ସେ— ଶୁଣିବ ନ କଣପାଇଁ ?

ସୁଣ—ଶୁଣ—ମୁଁ କାଲି ତୁମ ଜନ୍ମଦିନରେ ସୁଧା ଦେବୀଙ୍କୁ ସବୁ
ଖୋଲିକରି କହିଦେଲି ।

ସର୍ଓ—ଅବ୍‌ବା ! କେତେ ଗାଳିଟି କଲେ ହେ···କହିଲେ ? କଣ
କହିଲ କହିବତ ?

ସୁଣ—ସିଧା କଥାରେ କହିବାକୁ ଗଲେ ସେ ଏକାବେଳକେ ସ୍ତବ୍ଧ ।
ସ୍ୱା ମଧ୍ୟ ସେ କହିଲ ଯେ, ବହୁଆଗରୁ ତାର ତୁମ ପ୍ରତି
ଗୋଟାଏ ଆଖି ଅଛି ।

ସର୍ଓ—ଅବ୍‌ବା । ଇମିତ କହିଲ···ସତେ କହେ ? କେତେ ଗାଳିଟି
କଲଦେ । ତମେ ମିଶେ ସମାନେ ଆମର ଗଛରୁ ସାଲ
ସଢାଡଙ୍କ ପଣ୍ଡ ଅକା ଦେ । ସେ ମିଶେ ଆମ ଚେଲୁଁ
ଏମିତ ଆକା ସବୁ କଥାଦେବ ନା । ହିଁ, ଆଜି କଣ କହିଲ ?

ସୁଣ—ତାରଦନ ପାଇଁ ସେ ତୁମର ସାଥୀ ହୋଇ ରହିବାକୁ
ଚାହେଁ । ଏପରି କ ତାର ଜଟଳ ଜୋଠା, ଓଡ଼ିକା ସ'
ମିଲ୍‌, ଟ୍ରକ, ଧନସମ୍ପତ୍ତି ସବୁ ତୁମକୁ ଦେଇ ଦେବାକୁ
ଚାହେଁ ! କିନ୍ତୁ ତାର ଗୋଟାଏ ବଡ଼ ଅସୁବିଧା ହଉଛି—

ସର୍ଓ—କଣ ଅସୁବିଧା ?

ସୁଣ—ସ୍ୱାମୀ କଣ୍ଠ ଥାଉ ଥାଉ ତା' ସେ ଭଲେ ତାର ଧାରଣା
ନର୍କରେ ପଡ଼ିବ । ତେଣୁ ସେ କହୁଛି ଆଉ ଦିନୁ ଦନ
ଅପେକ୍ଷା କରିବାକୁ । କାରଣ ତାଙ୍କୁ ଟି. ବି. ହେଇ
ଗଲାଣି । ବଡ଼ ହେଲେ ଆଉ ଦ' ବର୍ଷମାସ ବଞ୍ଚିବେ କ
ନାହିଁ, ଠିକ୍ ନାହିଁ ।

ସୁରେ—ଏ'ସ୍ବୁର ମାଟ ? ମୁଁ ସମ୍ଭାଳ ପାରୁଛ ନ ମଣିବାକୁ । କମିତ
ହେଲେ କପନା କରନ୍ତ ଟିକଏ କର ।

ଗୁଣ—ତା ମଧ୍ୟ ବନ୍ଦୋବସ୍ତ ମୁଁ କରିଛ । ଆଜ ଶ୍ରୀକାନ୍ତକୁ ଏଠିକି
ଆସିବାକୁ ମୁଁ କହିଛି । ଜଳପାନ ଡ଼ମ୍ବା ହାତରେ ସଜେଇ
ରଖିଛ । ତାକୁ ଝିଆଣ ଚଳନ ପଦକୁ ପଠେଇଛ ।
ଡ଼ମ୍ବା ତା ସାଇ ପଡ଼ୋଶୀକୁ ତା ପାଖକୁ ପଠେଇବ । ମତ
କଣାରେ ସଜନକୁ ଦେଖିଲେ ସେ ଆଉ ସମ୍ଭାଳ ପାରି-
ବ ନ । ପର ତା ଉପରେ ହାତଦେଲ, ଡମ୍ବା ଆଉ
ଏ'ବୁଝିଟା ଆଡ଼ବାସୀ ଟୋକା ମିଶି ତାକୁ ବାନ୍ଧେଇ ଜର
ମାଉଛେବେ, ବୁଝିଲ ?

ସୁରେ—ଅଦ୍ଭୁତ ! ମାଷ୍ଟ୍ରେଦେବେ ! ଅଦ୍ଭୁତ ନାଟକ—ସମାସୁନ୍ଦର···
ସମାସୁନ୍ଦର । ହେଲେ କେଣୁ ହେଉଥିବ ? ଜାଗ୍ରତ ।

ଗୁଣ—ତା ନ ହେଲେ, ସେଠୁ ପର ଖସିପାଏ— ଏଇ ଦେଖ !
ରଖ ପୁଲୁ । [ ପ୍ଲେଟ ଖିଣି ବାହାର କରି ଦେଖାଇବା ]

ସୁରେ—ଏଟା କସ ?

ଗୁଣ—କସ ! କମାଣ୍ଡରଠୁ ଆଣିଛି । ମୋର କୁକୁର କାମୁଡ଼ିଛ,
ତାକୁ ମୁଁ ମାଷ୍ଟ୍ରେଦେବ ବୋଲି କହି କମାଣ୍ଡରଠୁ ଠକ
ଆଣିଛି । ପାଞ୍ଚ ଟୋପା ଏଥିରୁ ପର ମଦ ଜମ୍ବା ପାଣି
ସାଙ୍ଗରେ ମିଶେଇ ଦେଇପାରିବ ଶ୍ରୀକାନ୍ତକୁ—ତା ହେଲେ
ମକୁ କାମ ଖତମ ହୋଇଯିବ—କଥା ରଖ ।

ସୁରେ—ରକ୍ଷିଲ ସତ ତେ—ବଳେ ମଣିବାକୁ ! ଧରାପଡ଼ିଗଲା ପର
କଥ ଆଗରରେ ପଡ଼ିଯିବା ତ !

ଘୁଣ—ଯେତେବେଳେ—ନଅ ରଖ, ସେ କାମ ମୁଁ ଜାଣେ ।

ରଣ୍ଡ—ତୁମେ କହୁଚ, ଘଣ୍ଟରେ ମରେ ଡଙ୍କ ଫେରେଇ ନଇଲକୁ ମେମ୍ବେରକୁ ତମେ ସାହାଯ୍ୟ ଦବ ନା ?

ବୃନ୍ଦ—ଆରେ ଏମିତିକା ଲୋକ ମ ? ରଖିବ ନ ? ତା ହେଲେ ସୁଧାଦେବୀଙ୍କ ଆଶା ଗୁଡ଼ୁ ।

ରଣ୍ଡ—ଅଳ୍ବା-ବା-ବା । ଜୟ ହେ, ଏତେ ବୁଝନ୍ ଭାଣ୍ଡିଜ ହେ ?

[ ଖିଖି ହସିଲେ ]

ବୃନ୍ଦ—ଯାଅ, ସେ ଘଟେ ଲୁଚଯାଅ—ମୁଁ ଡାକଲେ ଆସିବ ।

[ ରଣ୍ଡ ଚାଲିଗଲେ]

ବୃନ୍ଦ—ତୁମ୍ବା ! ତୁମ୍ବା ! [ଡାକ ଡାକ ଚାଲିଗଲେ ଅନ୍ୟଦିଗକୁ ]

---

## ପଞ୍ଚମ ଦୃଶ୍ୟ

[ ଶ୍ରୀକାନ୍ତ ବାବୁଙ୍କ ଘରର ଗୋଟିଏ କୋଠରୀ—ଗୋଟାଏ ପାଖରେ ଖଣ୍ଡେ ଖଟ ଓ ଅନ୍ୟ ପାଖରେ ଗୋଟିଏ ଲମ୍ବା ଟେବୁଲ ଓ ଦୁଇଟି ଚଉକି—ଖଟ ପାଖକୁ ଗୋଟିଏ ଷ୍ଟେଟିଆ ଖୋଲା ଆଲମାରୀ—ଆଲମାରୀରେ କେତେଗୁଡ଼ିଏ ଔଷଧ ଶିଶି ଓ ଗ୍ଲାସ୍ ଥୁଆ ହୋଇଛି—କଥାବାର୍ତ୍ତା କରୁଚନ୍ତି ଡାକ୍ତର ଓ ସୁଧା ଦେବୀ ]

ଡାକ୍ତର—ନା-ନା ସୁଧା ଦେବୀ, ମୁଁ ଆପଣଙ୍କର କୌଣସି କଥା ଶୁଣିବାକୁ ଚାହେଁ ନା । ଆପଣ ଯେପରି ସଫେଇ ଦେଲେ ମଧ୍ୟ ମୁଁ ଆପଣଙ୍କୁ ଦୋଷୀ କରିବି, କାରଣ ଏ ମୃତ୍ୟୁ ତାପ୍ପାଇଁ ଆପଣଙ୍କୁ ହିଁ ନେବାକୁ ପଡ଼ିବ । ତା ନ ହେଲେ ଆପଣ ମନେ ରଖନ୍ତୁ, ଶ୍ରୀକାନ୍ତ ଖୁବ୍ ଶୀଘ୍ର ମରୁଛି ।

ସୁଧା—ଡାକ୍ତରବାବୁ !

ଡାକ୍ତର—ଆଲବିସ୍ ବୋଥ୍ ଲଙ୍ଗ୍ ଏଫେକ୍ଟେଡ୍—ମଝିରେ ମଝିରେ ସେ ପୁଣି ବ୍ଲଡ୍ ହେମିଟ୍ କରିବାକୁ ଆରମ୍ଭ କରୁଛି ।

ସୁଧା—ଡାକ୍ତରବାବୁ, ମୁଁ କ'ଣ କରିବି ଆପଣ ହିଁ କୁହନ୍ତୁ । ମୁଁ ମିନତି କରୁଛି, ମୁଁ କ'ଣ ଜବରଦସ୍ତି ତାଙ୍କୁ ଔଷଧ ଖୁଆଇଦେବି ?

ଡାକ୍ତର—ଦେଖନ୍ତୁ ସୁଧା ଦେବୀ ! ଆପଣ ଜବରଦସ୍ତି କରନ୍ତୁ ବା ଯାହା କରନ୍ତୁ, ତାଙ୍କୁ ଭଲ ହେବାକୁ ହେଲେ ଏଠି ଉପ-ସ୍ଥିତ ସବୁ ଔଷଧ ଖାଇ ଶଯ୍ୟାରେ ରହିବା ଉଚିତ । ତା' ନ ହେଲେ ତାଙ୍କୁ କୌଣସି ସାନାଟୋରିୟମ୍‌କୁ ନେବା ଦରକାର ଜରୁର ।

ସୁଧା—ସାନାଟୋରିୟମ୍ କଥା କହୁଛନ୍ତି ମୁଁ ମାଡ଼ ପର୍ଯ୍ୟନ୍ତ ଖାଉଛି ଡାକ୍ତରବାବୁ ! ଆଉ ମୁଁ କ'ଣ କରିବି ?

ଡାକ୍ତର—ତା'ହେଲେ ମୁଁ ବା ଆଉ କଣ କରିବି କୁହନ୍ତୁ ? ଅନେକ ଦିନ ତଳେ ମିକ୍ସଚର ଦିଆ ହେଉଥିଲା ନା, ତାର ଇଞ୍ଜେକ୍ସନ ନବା ସାଙ୍ଗେ ସାଙ୍ଗେ ଏଇ ମିକ୍ସଚରରୁ ଅନ୍ତ ଦୁଇଟି ଶିଶି ଖାଇସାରିଥିବାର କଥା । କିନ୍ତୁ ସେ ଖାଇଛି ମାତ୍ର ଗୋଟିଏ ଡାନ ମିକ୍ସଚର । ଇଞ୍ଜେକସନ୍ ନବାର ନାମ ଗନ୍ଧ ନାହିଁ । ତା ପରେ ଯେପରି ପ୍ରକାର

କଣ୍ଠି ନଦର ଦୂଷଣରେ ଅଛୁ ସର୍ବାଙ୍ଗ ଅଙ୍ଗ, ସବୁରୁ
ଅଭ ମାତ୍ରବାରାକେ ପିଇ ଯାଉଥିବ । ତାଏଠ୍ କଥା ତ
ସତ୍ ଜଣ୍ଟେ । ତା ହେବଳ ବୁଡନ୍ତୁ ଥାଇମିସ୍ ପେପେରେ,
କସ ଭୁଲ ହବ ଏମିତ ?

ସୁଧା—ଡାକ୍ତରବାବୁ ! ଆପଣ ତାଙ୍କର ସାଙ୍ଗ—ଆପଣ ତାଙ୍କୁ
ଟିକଏ ବୁଝାନ୍ତୁ । ଘରବର ସଂସାର ଭସିଯାଉଛି···ଆପଣ
ଟିକଏ ନଜରରେ ଲଗାନ୍ତୁ । ମୋ ଘର ଭସିଯାଉଛି

ଡାକ୍ତରବାବୁ—ମୋ ବଡ ବୁଝିପାରୁଛି ।

ଡାକ୍ତର—ତାକୁ ମୁଁ କ'ଣ ବୁଝାଇବ ସୁଧା ଦେବୀ । ସତ କହିବାକୁ
ଗଲେ ବିଦ୍ୟାରେ ବୁଡନ୍ତୁ, ବୁଦ୍ଧିରେ ବୁଡନ୍ତୁ, ରୂପ ବୁଡନ୍ତୁ,
ଗୁଣ ବୁଡନ୍ତୁ ସବୁ ବିଷୟରେ ମୁଁ ତା ଆଗରେ କହୁ
ନୁହେଁ । ମୋର ସାଙ୍ଗ ହେଲେ ବି ଏ ସବୁ ବିଷୟରେ ମୁଁ
ତାକୁ ଗୁରୁ ବୋଲି ମାନେ । କିନ୍ତୁ କ'ଣ ହବ ? ଶେଷକୁ
ଏମିତ ଅବସ୍ଥା ହେଲଣି ଯେ, ତାକୁ ସାଙ୍ଗ ବୋଲି କହିବାରେ
ପରିଚୟ ଦବାକୁ ମଧ୍ୟ ମତେ ଲାଜ ଲାଗିଲାଣି ।

ସୁଧା—ଡାକ୍ତରବାବୁ, ମୁଁ ଆପଣଙ୍କ ଗୋଡ ଧରୁଛି···ଆପଣ ମୋ
ଘର ମୁହଁକୁ ଚାହିଁ ସବୁ ଦୋଷ କ୍ଷମା କରନ୍ତୁ । ଏମିତ
କଥା ଶୁଣିବା ଅପେକ୍ଷା ଆପଣଙ୍କ ଆଖି ଆଗରେ ବୁଡ଼ିମାରି
ମରିଯିବାଟାକୁ ମୁଁ ବେଶି ପସନ୍ଦ କରନ୍ତି; କିନ୍ତୁ ଡାକ୍ତର
ବାବୁ, ମୁଁ ମାଆ । ଉଦରକୁ ପେଟ ଚିରି ମୁଁ ଜନ୍ମ ଦେଇଛି ।
ତାକୁ କେଉଁଠି ଛାଡ଼ିଦେଇ ଯିବି, ଡାକ୍ତରବାବୁ ? ଜୀବନରେ
ବହୁତ କଷ୍ଟ ସହିଥିଲି; କିନ୍ତୁ ସେ ସବୁ ମୋର ଜୀବନ ରେ
ଝଡ଼ି ଉଠୁଥିଲା ।

ଡାକ୍ତର—ନାନା ସୁଧାଦେବୀ, ଆପଣ ସେକଥା କହନ୍ତୁ ନାହିଁ ।

ସେ କଣ୍ଟେଷ୍ଟ ବୋଲି ମୁଁ କ'ଣ ଭାବୁ ଧରି ବସିଛି ।
ହଉ, ସେ ଗପ ବୁଝାଉଛ ?

ସୁଧା—ବୁଝାଉଛ ଆଉ କିଏ ? ଜନ୍ମଦାତ୍ରି ମତେ ମାଣ୍ଡ ସ୍ୱତ-ଖୋଳ ଟଙ୍କା ଦେଇ ମତଭ୍ରଷ୍ଟ କଲେ । ଶାଶୁଙ୍କୁ ମୁଁ ପଚାରିଥିଲି—ସେ ଆସି କହିଲେ—ମତ ଫିଲସଫ୍‌ର ଆଡ଼-ବାସୀଙ୍କ ଚରଣ ତଳେ ପାଖରେ ଯାଇ ହାଜର ।

ଡାକ୍ତର—ଅରେ ହଁ, ସେ ତ ସବୁ ନୂଆଁ ସ୍ୱତମତ ଗୋଟାଏ ପୁତ ଶେଷ । ହଉ ଗୁଡ଼ନ୍ତୁ ! ଶ୍ରୀକାନ୍ତ ଘରକୁ ଫେରିଲେ ଖାଣ୍ଟିଆ ହାତରେ ମତେ ଜଣେଇବ । ମୁଁ ଆସିଲେ ଆମେ ଆମର ଶେଷ ଚେଷ୍ଟା କରିବା । ତା ପରେ ତା ଭାଗ୍ୟରେ ଯାହା ଥିବ ।

ସୁଧା—ଆପଣ କାଲି ଦୟାକରି ଥରେ ବୁଝେଇବେ ଡାକ୍ତରବାବୁ !
ଡାକ୍ତର—ଆଜ୍ଞା ଆଜ୍ଞା ! ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ମୁଁ ବୁଝେଇବ । ହଁ ମୁଁ ବର୍ତ୍ତମାନ ଥରେ ଆସେ···ଡାକ୍ତର-ଖାନା ବେଳ ହେଉଛି । ନମସ୍କାର ।

[ ଡାକ୍ତର ଗଲାପରେ—ସୁଧା ପ୍ରତିନମସ୍କାର କଲେ ଖାଣ୍ଟି ଭଳି ବସିଲେ ଚଉକିରେ—କିଛି ସମୟ ପରେ ଆସିଛ ଖାଣ୍ଟି—ହାତରେ ଖଣ୍ଡେ କାଗଜ । ]

ଖାଣ୍ଟି—ମା, ଫାରଷ୍ଟ ଅଫିସ ବଡ଼ବାବୁ ଏ କାଗଜ ଦେଇଛନ୍ତି । କ'ଣ ନୋଟିସ ନା କ'ଣ ।
ସୁଧା—ନୋଟିସ୍ ? [ କାଗଜ ନେଇ ପଢ଼ିଲେ ]
ଖାଣ୍ଟି—କ'ଣ ମା, ଏ ନୋଟିସ ?
ସୁଧା—ଗତ ବର୍ଷର ଫରେଷ୍ଟ ଟ୍ୟାକ୍ସ ଯାହା ବାକି ଥିଲା, ତାର

ତୋଟାଏ ଜମି ପାଞ୍ଚଶ ଟଙ୍କା ଲାଗି ଦାଖଲ କରିବାକୁ
ହବ—ତା ନ ହେଲେ—

ପାଣୁ—ତା ନ ହେଲେ କ'ଣ ହେବ ମା' ?

ରାଧା—କ'ଣ ହବ ? ନ' ମିଳ ଅଟେଚ ହବ, ଘର କୋରକ୍
ହବ, ଜଳଖ ପଡ଼ ହଜମ ହବ ।

ପାଣୁ—ଥାଉ ଥାଉ ମା', ଥାଉ । ପାଣୁ ଏସବୁ ଆଉ ଶୁଣି ପାରିବ
ନି...ତା କାନ ତଳିଦା ଫାଟିଯିବ । କ'ଣ ହୁଏ ଏ କଥା,
କ'ଣ ହେଉ । କହୁ ଯୋଗାଡ଼ କର ମା'—ସବୁ ଧାଇ
ଭବର ଲଢ଼ିବ ଯିବୁ ।

ରାଧା— ଲଢ଼ିବ ଆଉ କାହିଁ ପାଣୁ, ସବୁ ଯାଉଛି । ଆଚ୍ଛା, ତୁ ବସ
ପାଣୁ, ମୁଁ ଆରଘରୁ ଆସୁଛି । ( ଚାଲିଗଲେ )

ପାଣୁ—ଆହା ମା-ମଣି ମୋ, ପଣ୍ଡୁ ତୁମେ କ'ଣ ସତରେ ଅନ୍ଧ ?
ତୁମେ କ'ଣ ସତରେ କିଛି ଦେଖିପାରୁ ନାହଁ ? ସତ୍ୟ
ବୋଲି କ'ଣ କିଛି ତୁମ ପାଖରେ ନାହିଁ ? କିଛି ନୁହଁ,
କିଛି ନୁହଁ, ସବୁ ମିଛ, ସବୁ ମିଛ । ସବୁ ପାଷାଣ, ପଥର,
ସବୁ ବେଇମାନ, ଦଗାବାଜ୍ । ଜନା ଦେଶରେ ଏ ଲକ୍ଷ୍ମୀ
ପ୍ରତିମା ପର ଏ ଦଶା ପାଇଲା, ତମେ କ ମହାପୁରୁଷ
ହୋଇଚ ନାହିଁ ? ଖାଲି ଆଳୁଆ ଚାଉଳ ଭୋଗ ଖାଇବାକୁ ?
ଯା ଯା ଯା—ଛି, ହରି ହରି—

( ଭିତରୁ ଅଇଲେ ରାଧା, ହାତରେ ଗୋଟିଏ ମୁନାହାର )

ରାଧା—ପାଣୁ ! ଏଇ ନେ । ଯିବ ଜେଲବାକୁ ପାଖକୁ । ତାକୁ
ନେଇ ଯାହା ଟଙ୍କା ସେ ଦେବେ, ନେଇ ଆସିବ । କହିବ
ମୁଁ ପଠେଇଚି ବୋଲି ।

ପାଣୁ—ସେ, କ'ଣ ମା ?

ସୁଧା—କଣ, ଧର ।

(ପାଣୁ ହାତକୁ ହାରଟା ବଢ଼େଇବା ମାତ୍ରେ ଗୁନ୍ଦାରେ
ସେ ତାକୁ ପକେଇ ଦେବ ଭଳେ ଓ ପାଟିକରି
ଉଠିବ )

ପାଣୁ—ମା' ଇଏ ନେସର ହାର ନା, ଯୋଉଟା ବୁଢ଼ିମା' ମୋର ତମକୁ ଦେଇଥିଲେ ?

ସୁଧା—ହିଁ ପାଣ୍ଡୁ, ଶେଷ ସମ୍ବଳ ଏଇ ଟିକକ ଶାଶୁଙ୍କର !

ପାଣୁ—ହଉ ହଉ ! (ମୁଣ୍ଡ ହଲାଇ ଓ ଆଖି ଛୁଟା'ଇ ଝୁଲପାଉଥିବ)

ସୁଧା—ପାଣୁ ! ଆରେ ତୁ ଝୁଲପାଉଛୁ କୁଆଡ଼େ ? ତାକୁ ଦେ ।

ପାଣୁ—ମୁଁ ତାକୁ ନେଇକରି ଯିବ କଣା ସଫେଇବାକୁ ? ହେଲ- ପାଣ୍ଡବନ ମା', ହେଇ ଯାଉଚ ନାହିଁ । ପାଣୁ କ'ଣ କରୁଛି ଏଇଆ ଦେଖିବାକୁ ? ଯାଉଚ ଏଇନେ ବୁଢ଼ୀ ମରୁଚ ।

ସୁଧା—ତୁ ବୁଢ଼ ମରିବା ଚିନ୍ତା ମୁଁ ଯାଉଛି କରେ ଜୁସ୍ ମାରହୋଇ ମରିଯିବ ? ତା'ହେଲେ ସବୁ କଥା ସରିଯିବ ।

ପାଣୁ—ମା' ମା, କ'ଣ କହୁଛ, କ'ଣ କହୁଛ । ଜୁସ୍ ମାରହୋଇ ମରିଯିବ ?

ସୁଧା—ତୁ ଯାଉଛୁ ନା ମୋ କାମ ମୁଁ କରିବ ?

ପାଣୁ—ଯାଉଛି ମା, ଯାଉଛି । ହେଲେ ସେକଥା ଆଉ କେବେ ମୁହଁରେ ଧରିବ ନାହିଁ ମା' ! ସେ କଥା ଆଉ ମୁହଁରେ ଧରିବ ନାହିଁ । ଶୀରକାନ୍ତ ଚାଲିଗଲେ, ହେଲେ ମୋ ରକ ଯେମିତ ଛୁଟି ନ ଯାଏ । ମା, ମୋ ରକ ଯେମିତ ଛୁଟି ନ ଯାଏ—

( ପାଣୁ ଡାକ ଦେଇ ଗୁଳିଚଳ—ତା ମିତା ବାଟକୁ ଅନ୍ଧ
ସୁଧା ଜାଣପଡେଇଗଲେ—ଦୌଡ଼ ଯାଇ ଖଟ
ଉପରେ ମୁଣ୍ଡ ମାଡ଼ି ଶୋଇ ରହିଲେ—କିଛିଏ
ପରେ ଆସିଲ ରବି—ହାତରେ ତାର ଖବୁଜ ଓ
କ୍ଷୀର ଗିଲାସ । )

ରବି—(ଖବୁଜ ଟେବୁଲରେ ପିଟି) ମାମୀ ! ମାମୀ ! ଓଃ ସୁ ମାମୀ-

ସୁଧା—( ଉଠିକୁ ଗୁର୍ଣ୍ଣ ଲଡ଼ ଦେଇ ଓ ପାଖକୁ ଦୌଡ଼ ଯାଇ ) ରବି ! କରେ ସେ କ'ଣ ? କ୍ଷୀର ଗିଲାସ ଧରି ବୁଲୁଛୁ କାହିଁକି ? ( ରବି କ୍ଷୀର ଢାଳିଦେଲା ) କରେ କ୍ଷୀର ଢାଳିଦେଲୁ କାହିଁକି ?

ରବି—ଓଲ୍ଡମ୍ୟାନ୍ ପାଣୁ ମୋର ଜଳଖିଆରେ ବିସ୍କୁଟ୍ ରଖିଲ ନାହିଁ କାହିଁକି ?

ସୁଧା—ଛି, ଏଇଥିପାଇଁ କ୍ଷୀର ଢାଳିଦେଲୁ ?

ରବି—ହିଁ ଖାଲି ମଦନ୍‌ମୋହନ ଆଉ କ୍ଷୀର ରଖିଛି ମୋ ଜଳଖିଆ ପାଇଁ ।

ସୁଧା—ଦଉ ଦଉ, ଓଲ୍ଡମ୍ୟାନ୍ ପାଣୁକୁ ଆଜ ମାରିବା ।

ରବି—ବାବା ମୋତେ ସେଦିନ ଯେମିତି ମାରିଥିଲେ ?

ସୁଧା—ହୁଁ ।

ରବି—ନା ନା ମାମୀ, ଓଲ୍ଡମ୍ୟାନ୍ ପାଣୁକୁ ମାରିବା ନା, ତାକୁ କଷ୍ଟ ହବ ।

ସୁଧା—ତା'ହେଲେ ତୁ ଜଳଖିଆ ଖାଇଦେ, ତାକୁ ମାରିବା ନା । ] ଖାଇଦେବୁ ?

ରବି—ହୁଁ, କିନ୍ତୁ ମାମୀ ବିସ୍କୁଟ୍ ?

ସୁଧା—ଆଚ୍ଛା କାଲିକି ତୋ ପାଇଁ ବିସ୍କୁଟ୍ ପାଇଁକୁ କହେଇଦେବି

ମଧ୍ୟ ଲୁଣ୍ଠିଦେବା । ଆଜ ଟୋଲି ଜଳଖିଆ ଖାଇ ସ୍କୁଲକୁ ଯାଉଥା ।

ରବି—ନା, ମୁଁ ସ୍କୁଲକୁ ଯିବ ନାହିଁ ।

ରାଧା—କେବେ, ଯିବୁ ନାହିଁ କାହିଁକି ?

ରବି—ନା, ଆଜ ସ୍କୁଲ ହେବ ନାହିଁ ମାଷ୍ଟ୍ରେ କହୁଥିଲେ, ତୋ ଖାଇସାରି ମନ ଖାଇବ ?

ରାଧା—ରବି !

ରବି—ମାମୀ ! ମତ ଛାଡ଼ିବା କେମନ ?

ରାଧା—ତବେ ବାପ, ଭାବ କେମନ ?

ରବି—ତାହେଲେ ବାବା ଖା'ନ୍ତୁ କାହିଁକି ?

ରାଧା—ରବି !

ରବି—ମାମୀ ! କାହିଁକି ଖାଆନ୍ତି ?

ରାଧା—ତାଙ୍କ ପେଟ ଖରାପ ବୋଲି ସେ ଖାଉନାହାନ୍ତି । ତୁ, ସ୍କୁଲ ମୁଁ ଜଳଖିଆ ଦେବ ।

ରବି—(ଆଖିପାଣି ପୋଛି) ହଁ ମାମୀ ! କାଲିଦାଣ ମତେ କହୁଛ, ତୋ ବାବା ମରିଯିବ ।

ରାଧା—ରବି !

ରବି—ନାହିଁ କୁହ ମାମୀ ! ବାବା—

ରାଧା—(ରବି ମୁହଁକୁ ଚାହିଁଥିବା) ରବି !

ରବି—ଓ ମାମୀ, କୁହ, ବାବା ମରିଯିବେ—

ରାଧା—ହଁ ରବି, ମୋ ବାବା ମରିଯିବେ—

ରବି—ମାମୀ, ବାବା ଆଜ ମରିଯିବେ !

ରାଧା—ରବି !

( ଶ୍ରୀକାନ୍ତ ବାହାରୁ ଆସିଛନ୍ତି ଡାକ୍ତରଙ୍କ—ସହ ମାତୃ

ଖାଉଥିବାରୁ ବେଶ ଅବଶ—ତାଙ୍କୁ ଦେଖି ଉଚ୍ଚ 'ବାବ' ବୋଲି ଚତ୍କାର କରି ସ୍ତମ୍ଭପାରେ ବଙ୍କଡ଼ ସ୍କନ୍ଧପାଉଚ ଦର ଖଟରକୁ । ]

ଶ୍ରୀକାନ୍ତ—ସୁଧା ! ସୁଧା !

ସୁଧା—ଏଁ କ'ଣ ହେଲା ? କ'ଣ ହେଲା ତୁମର ? ଆଗୋ କ'ଣ ହେଲା ? ଶୁଣୁ—

ଶ୍ରୀକାନ୍ତ—ଦରଜାଟା ବନ୍ଦ କରିଦିଅ ସୁଧା···ଝରକା ଟାଣିକରି ବନ୍ଦ କରିଦିଅ । ସେମାନେ ମତେ ପ୍ରାଣରେ ମାରିଦେବେ ସୁଧା !

ସୁଧା—ଏଁ, କିଏ ହେଲା ?

ଶ୍ରୀକାନ୍ତ—ଆଦିବାସୀମାନେ ମୋ ପଛରେ ଗୋଡ଼େଇଛନ୍ତି । ମତେ ସେମାନେ ପ୍ରାଣରେ ମାରିଦେବେ—

ସୁଧା—କ'ଣ ହେଲା ଆଦିବାସୀମାନଙ୍କ ସାଙ୍ଗରେ ?

ଶ୍ରୀକାନ୍ତ—କ'ଣ ଆଉ ହବ ସୁଧା ! ମୋ'ପରି ଏଭଳି ଲୋକର ଯାହା ହବାର କଥା, ଠିକ୍ ସେଇଆ ହେଲା । ଓଃ ମୋର କ'ଣ ହେଲା ସୁଧା ! ମୁଁ କ'ଣ କହିବି ! ନିଜ ଗାଲକୁ ଚାପୁଡ଼ା ମାରୁଥିଲେ) ଠିକ୍ ହେଇଛି—ଶ୍ରୀକାନ୍ତ ଚୌଧୁରୀ ତୁମର ସ୍ୱାମୀ । ଧିକ୍ ତତେ ଶ୍ରୀକାନ୍ତ ଚୌଧୁରୀ··· ଧିକ୍—

ସୁଧା—ଆଗୋ ମୋ କଥା ଟିକିଏ ଶୁଣ ! କ'ଣ ହେଲା ମତେ ଟିକିଏ କୁହ ?

ଶ୍ରୀକାନ୍ତ—(ସୁଧାର ପାଦଧରି) ତୁମେ ମତେ କ୍ଷମାକର ସୁଧା— ତୁମେ ମତେ କ୍ଷମା କର । ସୁଧା ! ତୁମେ ମୋର ଦେବୀ— ତୁମେ ମାନବୀ ନୁହଁ ସୁଧା—ତୁମେ ଦେବୀ । ତୁମ

ପାଖରେ ମୁଁ ଯେଉଁ ପାପ କରିଚି, ତାର ପ୍ରାୟଶ୍ଚିତ୍ତ କରୁଚି
ରାଧା ।

ରାଧା—ଭଗବାନ, ମୁଁ କ'ଣ କରିବି ?

ଶ୍ରୀକାନ୍ତ—ହଁ, ସେଇ ଭଗବାନ ହିଁ ତୁମର ଭରସା ରାଧା, ସେଇ ଭଗବାନ ହିଁ ତୁମର ଭରସା । ଶ୍ରୀକାନ୍ତ ଚୌଧୁରୀ ଧନୀ, ବଡ଼ଲୋକ, ଉଚ୍ଚ ଶିକ୍ଷିତ । ଯେ କୌଣସି ସ୍ତ୍ରୀ ତାକୁ ସ୍ୱାମୀ ରୂପରେ ପାଇ ନିଜକୁ ଶତ ଧନ୍ୟ ମନେ କରିବ—ଖୁବ୍ ସୁଖ ପାଇଲୁ ରାଧା, ଖୁବ୍ ସୁଖ ପାଇଲୁ । ରାଧା ! ମୁଁ ସ୍ୱପ୍ନରେ ବି ଭାବି ନ ଥିଲି ଜୀବନଟା ମୋର ଏମିତି ସରିଯିବ । ଆଉ ବେଶୀଦିନ ନୁହେଁ ରାଧା, ଖୁବ୍ କମ୍‌ଦିନ ।

ରାଧା—ମୋ ରାଣ, ତୁମେ ଟିକିଏ ବିଶ୍ରାମ ନିଅ । ଏମିତି ତୁମେ ଦୁର୍ବଳ । ରାଧା କଥା ଟିକିଏ ଶୁଣ, ଭଲ କଥା ଟିକିଏ ଶୁଣ । ରାଧାକୁ ତମେ ଏସବୁ କହିକି ପଠେଇବ ?

ଶ୍ରୀକାନ୍ତ—ଉଃ ରାଧା ! ମୋ ରକ୍ତ ସାଇ ସାଇ ବୁନ୍ଦ ଧନ ମାଗିବ, ରାଧା-ସେ ଋଣ ମାଗିବ । ପାପ ହିସାବରେ ମୁଁ ତା ପାଇଁ ସେତିକ ଭିକ୍ଷା ଦେଇଥିବି ।

ରାଧା—ଉଃ, ତୁମ ପାଖରେ ମୋର ଯେବେ ମରଣ ହୋଇଯାନ୍ତା—ମୁଁ ଆଉ ଏସବୁ କଥା ଶୁଣି ନ ଥାଆନ୍ତି—

ଶ୍ରୀକାନ୍ତ—ନା ନା ନା, ତା ବୁଝନ୍ତ ରାଧା ! ତା'ହେଲେ ସୃଷ୍ଟିରେ ସତ୍ୟ ବୋଲି କିଛି ରହିବ ନ···ଧର୍ମ ବୋଲି କିଛି ରହିବ ନ···ସ୍ୱୟଂ ଭଗବାନ ବୋଲି ବି କିଛି ରହିବ ନ ।

ରାଧା—ଆଗୋ, କାହିଁକି ତୁମେ ଏମିତି କରୁଚ ?

ଶ୍ରୀକାନ୍ତ—କ'ଣ ଆଉ ହେବ ବୁଝ ? ଶ୍ରୀକାନ୍ତ ଚୌଧୁରୀ, ଚୌଧୁରୀ

ବଂଶର କୁଳ କଳଙ୍କ, କୁଳାଙ୍ଗାର ଚନ୍ଦ୍ରମା । ମଦ ଖାଇଛି, ଜୁଆ ଖେଳିଛି, ସମସ୍ତ ସମ୍ପତ୍ତି ହରେଇ ଦାଣ୍ଡର ଭିକାରି ହୋଇଛି । ନିଜର ଏକମାତ୍ର ପୁଅ ଉପେନ୍ଦ୍ର ଚୌଧୁରୀଙ୍କୁ ସୁଶିକ୍ଷା ପାଇଁ ବଳିଛି, ଆମେରିକା ପଠେଇବା ବଦଳରେ ଉତ୍କଳର ରାଜଦାଣ୍ଡରେ ଖପର ଧରେଇଛି । ସୁଧା ! ସୁଧା !

ସୁଧା—ତୁମେ ଟିକିଏ ସ୍ଥିର ହୁଅ ଚୌଧୁରୀ ।

ଶ୍ରୀକାନ୍ତ—ସୁଧା ! ସୁଧା ! [ସୁଧା କୋଳ ଚୌକିରେ ବସେଇଲେ ଶ୍ରୀକାନ୍ତଙ୍କୁ ] ସୁଖର ସମ୍ପଦ୍ ଭଳି ଉତ୍ଫୁଲ୍ଲ ସୁଧା— ସମ୍ପଦ୍ ଭଳି ଶୀତଳ ଉଦ୍‌ବେଗଭରା ସୁଧା ? ଆଜି ଯଦି ମୁଁ ମରିଯାଏ, ମତେ ତୁମେ କ୍ଷମା କରି ପାରିବ ସୁଧା ?

ସୁଧା—ଶ୍ରୀକାନ୍ତ ।

ଶ୍ରୀକାନ୍ତ—ତୁମେ ମତେ କ୍ଷମା କର ସୁଧା । ତୁମେ ମତେ କ୍ଷମା କର । କୁହ, ତୁମେ ମତେ କ୍ଷମା କରିବ ?

ସୁଧା—ଆରେ, କିସିଡ଼ି ଭାବୁକ ହଉଛ ତୁମେ ? ମୁଁ ଟିକିଏ ତରଳ କ୍ଷୀର ଆଣି ଦଉଛି, ପିଇଦିଅ ତୁମେ ଟିକିଏ ଶୋଇପଡ଼ ।

ଶ୍ରୀକାନ୍ତ—ଉଃ ସୁଧା ! ତୁମ ନିଜ ମୁହଁରେ ତୁମେ ମତେ କୁହ ସୁଧା, ତୁମେ ମତେ କ୍ଷମା କରିବ ? କୁହ ସୁଧା···କୁହ···

ସୁଧା—ଶ୍ରୀକାନ୍ତ !

ଶ୍ରୀକାନ୍ତ—ସୁଧା ! କୁହ ସୁଧା !

ସୁଧା—ମୁଁ ତୁମକୁ କ୍ଷମା କରୁଛି, ଶ୍ରୀକାନ୍ତ ମୁଁ ତୁମକୁ କ୍ଷମା କରୁଛି ।

ଶ୍ରୀକାନ୍ତ—ସୁଧା !

ରାଧା—ଶ୍ରୀକାନ୍ତ !

ଶ୍ରୀକାନ୍ତ—ରାଧା ! ( କୁଣ୍ଢେଇ ପକେଇଲା ରାଧାକୁ )

ରାଧା—ହଉ, ତୁମେ ଟିକଏ ବସ—ମୁଁ ଟିକଏ ଗରମ କ୍ଷୀର ଆଣେ ।

ଶ୍ରୀକାନ୍ତ—ଯାଅ ରାଧା ଯାଅ—ଉପଯୁକ୍ତ ସ୍ୱାମୀର ଉପଯୁକ୍ତ ସେବା କର । ତୁମେ ଟିକଏ ମତେ କଷ୍ଟ ଦେଇ ପାରୁନା ରାଧା ?

ରାଧା—ଶ୍ରୀକାନ୍ତ ! ( ଫେରି ବୁଲିଲା—ଶ୍ରୀକାନ୍ତ ମୁଣ୍ଡ ତଳକୁ ପୋତି ଦେଲା—ରାଧା ରନ୍ଧାଘର—କିଛି ସମୟ ପରେ ପୁଣି ପ୍ରବେଶ କଲା କ୍ଷୀରଗ୍ଲାସ ଧରି) ନିଅ । କ୍ଷୀରଟା ଖାଇଦିଅ ।

ଶ୍ରୀକାନ୍ତ—ରାଧା, ମୁଁ ଟିକଏ ମୁଣ୍ଡଟା ଧୋଇ ଆସିବି ।

ରାଧା—ତ'ଣ ବାଥ୍ ରୁମ୍‌କୁ ଯିବ ?

ଶ୍ରୀକାନ୍ତ—ହଁ ରାଧା ।

( ଦୁହେଁ ବାଥ୍ ରୁମ୍‌କୁ ଚାଲିଗଲେ—ଅଗରୁ ସମସ୍ତ ଘଟଣା ଲକ୍ଷ୍ୟ କରୁଥିବେ ଗୁଣମଣି ଓ ବୁଢ଼ୀ ଝରକା ପାଖରେ ଛିଡ଼ାହୋଇ—ସେମାନେ ଚଞ୍ଚଳ ହୋଇ ଉଠିଲେ—ଗୁଣମଣି ବୁଢ଼ୀକୁ ଠେଲିଲେ କ୍ଷୀରରେ ବିଷ ଢାଳି ଆସିବାକୁ, ବୁଢ଼ୀ କିନ୍ତୁ ସାହସ କରିପାରିଲେ ନାହିଁ—ଗୁଣମଣି ହାତରେ ଚଞ୍ଚଳ ହୋଇ ବିଷ ଶିଶିଟା ନେଇ ଭିତରେ ଝରକାବାଟେ ପ୍ରବେଶ କଲେ ପରେ ଏବଂ କ୍ଷୀର ଗ୍ଲାସରେ ବିଷ ମିଶେଇ ଦେଇ ବୁଲିଗଲେ

( ହଣ ନମସ୍କାର ଜଣାଇଲା କାଳିଦାସ ପ୍ରତିନମସ୍କାର ଜଣାଇଲେ)

ଶାନ୍ତନୁ—ବସ କାଳିଦାସ, ବସ ।

କାଳି—ହ୍ଟ ଭେଣ୍ଡ ପ୍ରଙ୍କ ସାର୍, ଟିପିକ୍ - ଟେଚ ହଣ୍ଟ ଗଡ଼େଶା ହଣ୍ଟ, ଟେଣ୍ଡ ହଣ୍ଟ, ଗ୍ଲୋରିଡ ହଣ୍ଟ, ଟୋଲ୍ଡ ଥ୍ରୀଲ···ଚମ୍ପ-ନ୍ୟାସ ହଣ୍ଟ, ସର୍ଟ ଷ୍ଟୋର ହଣ୍ଟ, କଵଚା ହଣ୍ଟ, ବ୍ୟାକରଣ ହଣ୍ଟ, ଠିକ୍ ସେଇ ଥ୍ରୀଲ—ବୁଝିଲେ ହଣ୍ଟବାବୁ, ନେକ୍ସ-ପିଦ୍ରଙ୍କ ପରି ଗ୍ରାମାର ମଣ୍ଟ ଫଲେ ସି—ମୁଁ ଲେଖି ଗ୍ଲଳତ—କଣ୍ଟୁ ନବ୍ଧି ଗ୍ରୀ ପଦ୍ମଙ୍କପର ନୀ ଆଡ଼କୁ ନଜର ଦେଲେ ନ, ନ ଦଅନ୍ତୁ—ବହିଁଟି ଗୋଟାଏ ପାଣ୍ଡୁଲିପି ଏ ପର୍ଯ୍ୟନ୍ତ ମୋର ଛପା ହେଲା ନ; ଛପା ନ ହଉ—ପୁଣ୍ଡ ନ ହୋଇପାରେ, ତଥାପି ମୁଁ ହତାଶ ହେଲିନ—ଲେଖି ଗ୍ଲଳତ—କାରଣ ହ୍ଟ ଭେଣ୍ଟ ପ୍ରାଙ୍କ ଥ୍ରୀଲ୍ ।

ଶାନ୍ତନୁ—କାଳିଦାସ ! ମୁଁ ତୁମକୁ ଏଠିକି ଡାକିଥିଲି ଗୁରଣାଳ ନାଟ ଷଣ୍ଢରପାଲ ମଟଚ ଦେଖାଇବ ବୋଲି, ବ୍ୟାକରଣ ପାଇଁ ନୁହଁ । କାଲି ଶୀଳ୍ପଦ ଭବନଠାରୁ ଗୁରଣାଳ ନାଟକ ତଦ ଠମର ଚମ୍ପ ହେବ, ଗୁରୁର ନମ୍ବା ପାଣି ବ୍ୟାକରଣ ଭୁଲ ହୁଏ, ତା'ଦ୍ୱାରା ମୋର କ'ଣ ଯାଏ । ବନ୍ଧୁମାନେ—

କାଳି—ନୋ ସାର୍, ନୋ । ବର୍ତ୍ତମାନ ଦେଖନ୍ତୁ । ଧାରଣା ଦେବା ! ଧାରଣା ଦେବା ! ହ୍ଟ ଭେଶ ପ୍ରାଙ୍କ୍ ସାର୍, ନଅଣ ନୃତ୍ୟ ସାଥୀ ବନ୍ଧକାରେ ଗୋଟାଏ ଥ୍ରୀଲ୍ ସୃଷ୍ଟି କରି ପାରି-ଅଛି, ତା ଉଚ୍ଛ୍ବାସ ଦେଶରେ ଅଦ୍ଭୁତ ହେବନ ? ହ୍ଟ ଭେଶ ପ୍ରାଙ୍କ୍ ସାର୍ ଉତ୍ତରର କଲେଟରଲ ଏକ୍ସପେରିମେଣ୍ଟକୁ

କାଳି—ୱେଲ୍ ଟ୍ରିଡ୍ ! ଅନ୍ ପ୍ରେସିଡେଣ୍ଟେଡ୍ ଡାନ୍ସର ଟେମ୍ପୋ । ଦେଖିଲେ—ଦେଖିଲେ ଡାନ୍ସର କ୍ଲାଇମାକ୍ସ— ଦେଖନ୍ତୁ ଧ୍ରୁବ ଯୁଗର ପ୍ରାକ୍ ଅବସ୍ଥା, ଢଲବୁଲ୍ ଷ୍ଟେପ୍ ।

## ପଞ୍ଚମ ଦୃଶ୍ୟ

(ଡାକ୍ତର ବାବୁଙ୍କ ବୈଠକ ଘରର ଅଳିନ୍ଦ—ଭିତରୁ କହି କହି ପ୍ରବେଶ କଲେ କନକ)

କନକ—ବାବା ରେ ବାବା । ନା-ନା-ଏ ଘରେ ଆଉ ରହି ହେବନି । ସକାଳ ଧରୁ ପାଞ୍ଚ ଦ'ଟା ଫୁଲ ଆଣିବାକୁ ସେ ବନ ଆଣି ଦଶଟା ବାଜିଲାଣି । ବୋଉ ଠାକୁରଙ୍କୁ ପୂଜା କରିବେ କେତେବେଳକେ ? କେତେବେ ! କେତେବେ ! କି ମଜା ର ଜାମ—ବାଗାନ ଦ'ଖଣ୍ଡ ମାଡିବାକୁ ଡାକୁ ଲାଗିବ ପୂର୍ବ ଦିନୁ—କେତେ ମଜା !

କାଳି—(ପ୍ରବେଶ କରି) ବୋଉ ! ବୋଉ !

କନକ—କୁଆଡ଼ୁ ବଜାର ବେଇ ବେଇ ଆସିଲ ଗୁଣବନ୍ତ ?

କାଳି—ବୋଉ କୁ ଡାକିବୁ ସିଷ୍ଟର୍ । ଧ୍ରୁବ ଯୁଗର ପ୍ରାକ୍ ବୋଉ କୁ ସୀତା ଛାଡ଼ି କଥାରେ ଡାକୁ କାହିଁକି ? କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ, ଧ୍ରୁବ ଯୁଗର ପ୍ରାକ୍ ବୋଉ ମଣିଷଙ୍କୁ ପାଗଳ କରିଦିଏ···ଉଦାସ କରିଦିଏ ।

କନକ—ବାବା ରେ ବାବା, ପଲ ପଲ ହେଉ କେତେ ଯେ ଆସୁଚନ୍ତି
ଏଇ ଦସ୍ୟୁ ହବାସ ଗୁଣ୍ଡାକ—!

ବାଳି—ଓଃ ବୋଉ, ଆଜ ଆମ୍ ସବୁ, ଖେଳର ସଙ୍ଗ, ଟ୍ରୁ ଵ ଲେଭର
ପ୍ରାଙ୍କ୍ ମୁଁ ଏକଦାରେ ଭୁଲିଯାଇଛି । ତୋ ଗାଡ଼ନର
ଜଣେ ବଶିଷ୍ଟ ଲୋକ ଆଜ ଆସିଚନ୍ତି ତତେ ଦେଖା
କରିବାକୁ । ଅପେକ୍ଷା କରୁଚନ୍ତି ବାହାରେ । ହୋଇ
ପାରନ୍ତି ଅଦୃଶ୍ୟର ଇଙ୍ଗିତରେ ସେ ଆଜ ଗଢ଼ିବ; କିନ୍ତୁ
ହବାସ ନୁହେଁ । ହଠାତ୍ ଦେଖା ଓ ପରିଚୟ ପରେ
ତାଙ୍କ ପାଖରେ କଥାବାର୍ତ୍ତା କରି ମୁଁ ଯାହା ଜାଣିଲି
ଜାଣିଚ ବୋଉ···ସେ କେବଳ ମୋର ନୁହଁନ୍ତି ସମଗ୍ର
ପୃଥିବୀର ସେ ହଉଚନ୍ତି ନମସ୍ୟ···ମା । ତାଙ୍କ ଆଗରେ
ଟ୍ରୁ ଵ ଲେଭର ପ୍ରାଙ୍କ୍ ଝୋଉ କୁ ଟେମ୍ବଲ୍ଡ୍ ଆଗରେ
ଠିକ୍ ପରବର୍ତ୍ତୀ ଓକ୍ପନାଷ୍ଟ ଭଳି ।

କନକ—ଏ ! ଏଇଟା ପାଗଳ ହେଇଗଲାଣି ନା କଣ ! କଣରେ
କାହା କଥା କହୁଚୁ ?

ବାଳି—କାହା କଥା କହୁଛି ବୋଉ···ତୋର ହଟିଷ୍ଟ ବନ୍ଧୁ ସେଥା
ଦେବୀ···ଭବର ମା । ଟ୍ରୁ ଵ ଲେଭ ପ୍ରାଙ୍କ୍ ଜେଲରୁ
ମୁକୁଳିଲା ପରେ ତାଙ୍କୁ ମୁଁ ପାଖରେ ନେଇ ଆସିଛି ।
ଟ୍ରୁ ଵ ଲେଭ ପ୍ରାଙ୍କ କୁ ନିଶ୍ଚୟ ଝୁରିହବୁ ।

କନକ—କିଓଁ ପାଞ୍ଚିଣ ହେବ । ଏଠି ଚାର କଏ ଅକ୍ତ ମଧ
ଦଉଡ଼ ଆସିଛି । ଯା କହିବୁ ଯା, ରଖ ଏଠି ଯାହିଁ ଦେବାକୁ ।
ଗୋଟାଏ ଖୁନ ଆସାମୀକୁ ମୋ ଘରେ ନ ପୂରାଇଲେ
ଚଳୁଚ ! ଯା ମନା କରିଦବୁ ତା ।

ବାଳି—ମନା କରିବାର ହେଲେ ତୁ ଯା ଜଣେ ମନା କରିଦେ ।

ସେ ଆସିଚନ୍ତି ଦେଖା କରିବାକୁ ତତେ···ମତେ ଲୁଚେଇ ।
ମୁଁ ବ ଭେଦ୍ର ପ୍ରାକ୍—      (ଚାଲିଗଲା)

କନକ—ଏଁ ସତ ! ଯଦୁଗୋପାଳ ଅଛନ୍ତି ମୋ ଶୁଭାକାଂକ୍ଷୀ ବନ୍ଧୁ ।

ରାଧା—(ବାହାରୁ) କନକ ! କନକ !

କନକ—କଏ ? ଭିତରକୁ ଆସ ।

ରାଧା—( ପ୍ରବେଶ କରି ) କନକ ! ମୁଁ ରାଧା । ମତେ ଚିହ୍ନି ପାରୁନୁ ?

କନକ—ହଁ ଚିହ୍ନିଲି—ଶୁଣିଲେ ତମ ଭଉ ତ ଏଠି ନାହିଁ—କୁଆଡ଼େ ଚାଲିଯାଇଛି ।

ରାଧା—ହିଁ ହିଁ ମୁଁ ଶୁଣିଚି କାଲିଠାରୁ—କହୁ କନକ ! କାହିଁକି—କାହିଁକି ମୋ ଭଉ ଚାଲିଗଲା ?

କନକ—ମା' ହେଉ ତମେ ଟୋକି ଡାକ ଦେଲ, ସେଥିରେ ବାର ଲୋକ ବାରକଥା କହିଲେ···ସହି ପାରିଲା ନି—ପିଲାଟା ଲୁଚିକରି ଚାଲିଗଲା ।

ରାଧା—ମୋ ଭଉ ପଥ ଲୋକଙ୍କ କଥାକୁ ବିଶ୍ୱାସ କଲା ? ତୁମେ ସବୁ ତାକୁ ଟିକିଏ ବୁଝେଇ ପାରିଲ ନି ?

କନକ—ମଲା, ସିଏ କଣ ବୁଝିବା ପିଲା ହେଇଥିଲା ଯେ ବୁଝେ-ଇବ ! ଗୋଟାଏ ଖୁନିଆସାମୀର ପୁଅ ବୋଲି ଜାଣିପାରି ତାର ତମ ଉପରେ ଘୋର ରାଗ—

ରାଧା—କନକ ! କେବଳ ତାହାପାଇଁ କନକ, ଏ ପୋଡ଼ା ଜୀବନ-ଟାକୁ ପନ୍ଦରବର୍ଷ କାଳ ରଖି ଆସିଥିଲି ଜଗି ପହରି ଗାମଛା ହେବ୍ର ନଜରେ ଭିତରେ । ସେଇ ଭଉର ମୁହଁକୁ

ସ୍ୱର୍ଗୀ ସ୍ୱାମୀର ମୃତ୍ୟୁରେ ମଧ୍ୟ ମୁଁ ଟିକଏ କାନ୍ଦ ପାରି ନ ଥିଲି ।

କନକ—ସଙ୍ଗ୍ୟ ଖବର ପଢ଼ିଲେ ସବୁ ଆଖୁ ପଡ଼େ ସଖୀ, ତା ଛଡ଼ା ମୁଁ କହୁଛି ସେ ଯାଇଛି ଭଲ ହୋଇଛି ।

ରୂପା—କନକ !

କନକ—ଯେଉଁ ପଦ ଆଜି କୋଉଠି ବଡ଼ି ସୁଖରେ ଥାଏ, ତାକୁ ତ ଆଉ ଖୁନୀ ଆସାମୀର ପୁଅ ବୋଲି କେହି କହି ପାରିବେ ନାହିଁ; ସେ କଥା ନ ଜାଣିଲା ପର୍ଯ୍ୟନ୍ତ । ସେଥିପାଇଁ ମୁଁ କହୁଛି ତୁମ ନିଜପାଇଁ ତୁମର ଜନ୍ମ ଗୋଟାଏ ବାଟ ବାଛି ନିଅ । ତା ଉପରେ ଆଉ ଗନ୍ତବ୍ୟ ଦବାକୁ ଯାଅନା ।

ରୂପା—କନକ !

କନକ—ନାହିଁ ନାହିଁ, ତମେ କହୁନ ? ବାବାରେ ବାବା, ଗୋଟାଏ ଖୁନୀ ଆସାମୀର ପୁଅ ବୋଲି ଜାଣିଲେ ଲୋକେ ଟିଟ୍‌କାର ମାରି ତା ମୁଣ୍ଡଟାକୁ ଖାଇଯିବେ ସିନା !

ରୂପା—କନକ ! ତମେ ଠିକ୍ କହୁଛ କନକ । ନା-ନା, ତା କଦାପି ନ ହେଉ । ପଦ ସେ କୋଉଠି ବଞ୍ଚିକରି ଥାଏ, ତା ହେଲେ ତାଣ୍ଡରେ ତା ମୃତ୍ୟୁ ନର୍କ ନ ପଡ଼ୁ । ମୋ ଜନ୍ମ ଦୁଃଖୀ ମା ପାଇଁ ମୋ ଭବିଷ୍ୟ ମାନସମ୍ମାନ ହାନି ନ ହେଉ କନକ···ସେ ସୁଖ ଶାନ୍ତିରେ ରହୁ । ଭଗବାନ ତାକୁ ଭଲରେ ରଖନ୍ତୁ । ମୁଁ ମୋ ବାଟ ଖୁବ୍ ସହଜରେ ବାଛି ନେଇ ପାରିବି । କେବଳ ଆଖି ବୁଜିବା ପୂର୍ବରୁ ଥରୁଟିଏ ତାକୁ ଆଖି ପୂରେଇ କମିତି ଦେଖନ୍ତି ସେତିକାରେ ମୋ ଜୀବନର ମୂଲ୍ୟ ମୁଁ ପାଇଯାନ୍ତି କନକ···ମୁଁ ଶାନ୍ତିରେ

ଥାଏ···ପ୍ରକୃତରେ ଯଦ ମୁଁ ତାର ମାଆ ହୋଇଥାଏ, ତା ହେଲେ ମୋ ଭାଗ୍ୟରେ ଏ ଦୁଃଖଗାଥା ଘାଟିଥିନ ଜନନ, ଏ ଦୁଃଖଗାଥା ଘାଟିଥିବ ।

## ଷଷ୍ଠ ଦୃଶ୍ୟ

(ଗୋଟିଏ ପାର୍କ—ସମୟ ସନ୍ଧ୍ୟା ପାଞ୍ଚଟା—ପ୍ରଭଦନ କାନ୍ଦୁଛି ରାଧା—ଆଖିରୁ ଧାର ଧାର ଲୁହ ବହୁ-ଯାଉଛି—ଅଦୂର ହେଡଟାକୁ ଗୋଟିଏ ସିମେଣ୍ଟ ବେଞ୍ଚ ଉପରେ ବସି କଣ ଭାବ ଦୁଳନ୍ତି—ଛତ ମଧ୍ୟରେ ଗୋଟିଏ ଲକାସ୍ପ ଗୀତଟିଏ ତାଇ ରାଇ ବୃନ୍ଦଗଳ )

ମା···

ଏ ବାପୁଣୀ ମା'ଲେ—ଖୁ କ ଖୋଜ ବୁଲୁ କହ
କାହାର ନୁ ମା (ଲୋ) ?
ଦୁନିଆର ନଅଁ ଗିଳା ଜଂଆପୁରେ
ତମ ପାଇଁ କାନ୍ଦୁ ପାଆ ।। ଘୋଷା ।।
ବହୁଥାଉ ବୁ ତୋ ସଦେହକୁ··ପାଷାଣୀ ପର
ଲୁଚିଲୁ ଆଖିରେ ଲୁହ ଅଧର—ମଳିଆହାଡ଼

କା'ଆଗେ ବେଦନା ଦେବୁ ନିଗାଡ଼ି
ଜଗିବ କିଏ ଆହା ॥ ୧ ॥
ମାଗି ଋଣର ଚଳୁ ଲୋକଙ୍କ ଦେଖିଲେ ଲାଜର ମରି
ଅଛିବ ନାହିଁ ମା' ମମତା (ପୁତ) ପୁଅ ଦେଖିଲେ ବସି
କାଳମୂଲ୍ୟର ଶୀର୍ଣ୍ଣତା ତୋର ହରିଛି ଜୀବନ ପୂର୍ଣ୍ଣତା
ମା'ବୋଲି ଶ୍ରଦ୍ଧା ଦେବାକୁ ରଚନା
କେଉଁଠି କ ସାନ୍ତ୍ୱନା ?
ଭୁଞ୍ଜିର ତୋ ପୁତେ ମା' ଡାକିଲେ ତୋତେ
ହାଣିଦେଏ ଘର ନାଁ···ମା···॥ ୩ ॥
ନାହିଁ ତୋର ରୁଦ୍ର ଦେବାକୁ ଇଦାର
ଅନ୍ଧରା ତୋ ବୁକ ଭଗ୍ନ ଲମ୍ବା ଗିର
ଅନ ଚାଷ ମଟେ ଭୂମଣ୍ଡ ଗୁମରି
ପାଲଟେ ଚତେଲ ଧାର
ଖାଲି ଆହା କଣ୍ଠ ବାତ୍ସଲ୍ୟମୟୀ
ପାଦ ଚଣ୍ଣୀ ଧୂଳି ବନ୍ଦା···ମା'···
ତୁ ଜଣ୍ଣୁ ବନ୍ଦନା ମାଆ—॥ ୪ ॥

( ଗୀତାରେ ପ୍ରବେଶ କରନ୍ତି ହରି ଏବଂ ଧରଣୀ )

ହରି—ଦେଖ ଧରଣୀ ! ମାନ ଅଭିମାନର ଅର୍ଥ ମୁଁ କିଛି ବୁଝେ ନା । ଦୁନିଆରେ ମୋର ପ୍ରିୟ ଗୋଟାଏ ଜଡ଼ ପଦାର୍ଥଠାରୁ ଆହୁରି ମୂଲ୍ୟହୀନ ହୋଇଯାଇଛି । ତୁମେ ମୋଠାରୁ ଦୂରେଇ ଯାଅ ଧରଣୀ । ବାରମ୍ବାର ମୋର ମନକୁ ଛୁଇଁବାକୁ ଚେଷ୍ଟା କର ମତେ ଦୁର୍ବଳ କରି ଦିଅନା । ମତେ ମୋର କର୍ତ୍ତବ୍ୟ କରିବାକୁ ଦିଅ ।

ଧରଣୀ—ଭୁଲି ଯାଇଛ ନା । ତବ ମନ୍ଦିରର କର୍ତ୍ତବ୍ୟ ପଥରେ ପ୍ରତି-

ବଳନ ହୁଏ, ତା'ହେଲେ ବେପ୍ରକ୍ତା ନାହାକୁ କୁହାଯିବ ହଂ
ଷତ ପ୍ରଶଂସା ? ଗୁଡ଼ିଏ କରତାଳି ? ମନ ମୋର ଚଳକୁ
ଖପିଯାଇଛ ହଗ—ତୁମେ ଏକଚେଟିଆ ନାହାଁ ପ୍ରସ୍ତୁବାଦ
ହୁଅନା । ଟିକିଏ ଶାନ୍ତ ହୁଅ ।

ମଣି—ଏଥିରୁ ଶାନ୍ତ କାଟିବ ସ୍ୱରଣା, ଯଦ୍ୟପି ଶାନ୍ତ କରିବ ।
ବହୁ ମୂଲ୍ୟବାନ ସମୟ ମୋର ତୁମର, ଚିନ୍ତାରେ କଟିଛି
ଯାଇଛି । ସିଦ୍ଧାନ୍ତରେ ପହଞ୍ଚି ମୁଁ ଆଜ ଅପ୍ରିୟ ସତକଥା
କହିବାକୁ ବାଧ୍ୟ ହେଉଛି—ତୁମେ ମୋତେ କ୍ଷମାକର ।

ରେଣା—କିନ୍ତୁ ମଣି, ବାବା ମୋର ସବୁ ଦେଇ ଅସ୍ଥିର ହେଇ
ଉଠିଛନ୍ତି । ମୁଁ ପ୍ରତିବାଦ କରନ୍ତି କେମିତି ? ତୁମଠାରୁ
ପ୍ରତିଶ୍ରୁତି ପାଉନଲେ ତ ? ସେଥିକି ତାହେଲେ କୁହ ହବ ?

ମଣି—ନା, ସେ ପ୍ରତିଶ୍ରୁତି ମଧ୍ୟ ଦେଇପାରିବ ନି ରେଣା ! ତୁମେ
ତୁମ ବାବାଙ୍କର ଇଚ୍ଛାକୁ ମାନିନିଅ ।

ରେଣା—ତୁମେ ଏତେଟା ନିଷ୍ଠୁର ହୁଅନା··ମୁଁ ସୁଖୀ ହୋଇ
ପାରିବିନି ।

ମଣି—କି ଆଶ୍ଚର୍ଯ୍ୟ ! ତୁମ ବାପାଙ୍କ ଇଚ୍ଛା ଅନୁଯାୟୀ ଗୋଟିଏ
ଐଶ୍ୱର୍ଯ୍ୟଶାଳୀ ପରିବାରର ବୋହୂ ହୋଇ ତୁମେ ସୁଖୀହୋଇ
ପାରିବନି; ଅଥଚ ମୋ ପରି ଗୋଟିଏ ଅପଦାର୍ଥ, ଯାହାର
ଘର ନାହିଁ, ଦ୍ୱାର ନାହିଁ, ବାପ, ମା, ଭାଇ, ବନ୍ଧୁ କେହି
ନାହାନ୍ତି, ଯାହାର ମା' ଗୋଟିଏ ଖୁନ ଆସାମୀ, ତାକୁ
ନେଇ ତୁମେ ସୁଖୀ ହୋଇପାରିବ ?—ଏ ପ୍ରକାର ଚିନ୍ତା-
ଧାରାର ଅର୍ଥ ମୁଁ କିଛି ବୁଝୁନି ।' (ରେଣା ଚମକି ଉଠିଲା)

ରେଣା—ତୁମେ କଣ ଖୁନ ଆସାମୀର ପୁଅ, ବୋଲି ମୋ ମନକୁ
କେବେହେଁ ଭୁଲିନ ହବ । ତୁମ ପରି ଜଣେ ଆଦର୍ଶବାଦ

ସୁନନ୍ଦର ମା' କେବେ ତାର ସ୍ୱାମୀକୁ ନିଜ ହାତରେ ହତ୍ୟା କରିପାରେନା । ତା'ହେଲେ ତ ଦୁନିଆରେ ଗଣ୍ଡ ଲାଗିଯିବ, ନାରୀତ୍ୱର ଶାନ୍ତିଧାରା ମୂଳଦାନ ହୋଇଯିବ ।

ଚନ୍ଦ୍ର—କେବଳ ତୁମର ଏ ଯୁକ୍ତି ଦୁନିଆର ପ୍ରତ୍ୟେକଙ୍କ ମୁକ୍ତିକୁ ବନ୍ଦ କରି ପାରିବନି ଝରଣା ।

ଝରଣା—ସେ କଥା ମୁଁ ଜୋର ଦେଇ କହିପାରିବନି ହରି । କିନ୍ତୁ ସୁନନ୍ଦ ସଂସାରରେ ତୁମେ ନିଶ୍ଚୟ ମାନିବ, ଏଇଟା ତୁମର ଓ ତୁମ ମା'ଙ୍କ ଜୀବନର ଗୋଟାଏ ଦୁର୍ଘଟଣା । ତୁମେ ନିଜେ ତୁମ ମା'ଙ୍କର ଖୋଜ କର ।

ହରି—ସେ ସଂସ୍ପୃଷ୍ଟ ମୋର ଆଶିଷ ଝରଣା । ତଥାପି ସେଇଟା ଏ କଥା ଜୀବନର ଗୋଟାଏ ମସ୍ତବଡ଼ କର୍ତ୍ତବ୍ୟ ।

ଝରଣା—ତା'ହେଲେ ମତେ ସେ ଚରିତ୍ର ଅପେକ୍ଷା କରିବାକୁ ନିର୍ଦ୍ଦେଶ ଦେବାକୁ ତୁମେ ଚାହୁଁଛ କାହିଁକି ?

ହରି—ଝରଣା ! ତୁମେ ଜାଣ ମୋର ବର୍ତ୍ତମାନର ପରିସ୍ଥିତିକୁ କଳ୍ପନା କରି ପାରୁନା ? କେବଳ ତୁମରି ପାଇଁ ମୁଁ ଆଜି ତୁମ ବାପାଙ୍କର ଅପ୍ରିୟ ହୋଇ ଉଠିଛି । ମୋର ପଢ଼ାପାଇଁ ସେ ଯେଉଁଠା ସାହାଯ୍ୟ କରୁଥିଲେ, ତା ଆଉ ସେ କରି ପାରିବେନି ବୋଲି ସିଧା ସିଧା କହି ପାରିଲେଣି । ମୋର ଜୀବନର ଭବିଷ୍ୟତରେ ପୂର୍ଣ୍ଣଚ୍ଛେଦ ପଡ଼ିଲା ବେଳେ ମୁଁ ତୁମକୁ କି ସାହାଯ୍ୟ ଦେବି ଝରଣା ?

ଝରଣା—(ସ୍ୱଗତ) ଦୁଃଖ ! ମୁଁ ଖାଲି ତୁମକୁ ସାହାଯ୍ୟ କରିବି···ତୁମେ ନେବ ନାହିଁ ?

ହରି—ଜଣା ବାବାଙ୍କ ବାକ୍ୟଟିକୁ ଶୁଣିଛ ତ ? (ହସିଲ) ମୁଁ ସେ ଭୁଲ କରି ପାରିବନି ଝରଣା—ମତେ କ୍ଷମା କର ।

ସ୍ୱରଣା – ଆଜ ମୋ ପାଖରେ କିଛି କହିବାକୁ ନାହିଁ ହଁ—ମୁଁ ଚୁପ୍ ରହିବ । ଆଜ ଭେଟିବଦେଲେ ତୁମକୁ ଧରନ୍ତି ଜାଣିବ ନି । (କାନ୍ଦି ପକାଇଲା)

ମଣି – ଓଃ, ନମସ୍କାର ସ୍ୱରଣା—ନମସ୍କାର ତୁମର ସେଇ ଲୁହ । ତୁମର ସେଇ ଲୁହ ଭିତରେ ମୋ ସମସ୍ତ ଜୀବନର ଅତୀତଟା ଜିମିତ ଉଙ୍କିମାରି ଉଠୁଛି । ହଁ ଆଜ ଯଦି ନୋଟପୁରର ପ୍ରସିଦ୍ଧ ବ୍ୟବସାୟୀ ଶ୍ରୀକାନ୍ତ ଚୌଧୁରୀର ପୁଅ ରବୀନ୍ଦ୍ର ଚୌଧୁରୀ ହୋଇଥାନ୍ତା, ତା'ହେଲେ ତୁମର ସେଇ ଲୁହର ଦାମ୍ ଦଅନ୍ତା... ନିଶ୍ଚୟ ଦଅନ୍ତା । କିନ୍ତୁ ଆଜ ନେଜଟଳ ଭଗବାନଙ୍କ ଉପରେ ଭରସା କରି, ମୁଁ ଗଢ଼ି ତୁଳନ୍ତି ତମାର ଭବିଷ୍ୟତ ଜଣେ ଦରିଦ୍ର ମାଳିର ଅନ୍ଧାରରେ ଚୁକପାଳତ ହୋଇ । ମୁଁ ଜନ୍ମପାପୀ ସ୍ୱରଣା, ମୁଁ ଜନ୍ମପାପୀ ।

ସ୍ୱରଣା—ବେଶ୍ ବେଶ୍, ତୁମେ ତୁମର ଭବିଷ୍ୟତ ଗଢ଼ିଥିଲ ହଁ । (କାନ୍ଦ) ଭଗବାନ୍ ତୁମ ଭବିଷ୍ୟତ ଜୀବନରେ ପୁଷ୍ପବୃଷ୍ଟି କରନ୍ତୁ । ତୁମେ ସୁଖୀ ହୁଅ । ତା'ପୂର୍ବରୁ ମୁଁ ମୋର ସୁଖର ଭବିଷ୍ୟତ ଗଢ଼ି ନେଇଥିବ ହଁ । ଗଢ଼ି ନେଇଥିବି ।

ମଣି—ସ୍ୱରଣା ! ଓଃ ନିଷ୍ଠୁର ସ୍ୱରଣା ଜୋଛନା ଓ ଫୁଲ— ଜୀବନର ଝଡ଼ରେ ଏମିତ ହୁଏନା । ସ୍ୱରଣା—ଜୀବନର ମୂଲ୍ୟ ଏତେ ଅଳ୍ପ ନୁହେଁ ।

ସ୍ୱରଣା—ମୋର ଜନ୍ମଭୂମି ମୋ ଉପରେ ଏଥର ଶୁଦ୍ଧ ହଉ । ତୁମେ ତୁମର କର୍ତ୍ତବ୍ୟ ପଥରେ ଆଗେଇ ଯାଅ ।

(ସେମନ୍ତବେଳକୁ ବାଧା ଦେଇ ଆସି ସ୍ୱରଣା ପାଖରେ ପଡ଼ନ୍ତି ତାକୁ ବାନ୍ଧି ବାନ୍ଧି କରି ଶୁଣି ରହିଥାନ୍ତି—

ଦୁରଣା ସେଫ୍ଟପଡ଼ ସୃଜଣେଶ ଟେକେଲୁ  ରାଧାକୁ
ଦେଖି ପ୍ରକୃତିସ୍ଥ ହୋଇ ପଶ୍ନିଲେ —)

ଦୁରଣା—କ’ଣ ଦେଖୁଛ ? ପଇସା ନେବ ?

(ରାଧା ମୁଣ୍ଡ ହଲେଇ ନାସ୍ତି କଲେ)

ଦୁରଣା—ତୁମେ କାନ୍ଦୁଛ କାହିଁକି ? ତୁମର କ’ଣ କେହି ନାହାନ୍ତି ?

ରାଧା—(ଟିକିଏ ପୁଣି ପ୍ରକୃତିସ୍ଥ ହୋଇ) ମୋର ସମସ୍ତେ ଅଛନ୍ତି ମା’ ମୋର ସମସ୍ତେ ଅଛନ୍ତି । ତୁମେ କାହା ଝିଅ ମା ?

ଦୁରଣା—ଆଡ଼ଭୋକେଟ୍ ଶାନ୍ତନୁବାବୁଙ୍କ ଝିଅ ।

ରାଧା—ଘର କେଉଁଠି ?

ଦୁରଣା—ଏଇ ଟାଉନରେ—ଚୌଧୁରୀ ବଜାରରେ । ତୁମେ ଇମିତି ପଶ୍ଚୁଛ କାହିଁକି ? ତୁମର ଯଦି ସମସ୍ତେ ଅଛନ୍ତି, ତାଙ୍କ ପାଖକୁ ଯାଉନା ?

ରାଧା—ଦିନ ମା’ ଦିନ—ହେଲେ ସମୟ ମୋର ଆସିନି, ଆହୁ ! ମା’ ତମ ଘରେ କାମ କରିବାକୁ ମୋତେ ରଖିବନି ? ମୁଁ କାମ କରିବି ।

ଦୁରଣା—ତୁମେ ଚାକରି କରିବ ? କଣ—(ବୁଝିନ ହେଲୁ)

ରାଧା—ମୁଁ ଭାରି ଅସୁବିଧାରେ ପଡ଼ିଛି ମା’—ତୁମେ ମତେ ଟିକିଏ ସାହାଯ୍ୟ କର ।

ଦୁରଣା—ମୁଁ ତ ପ୍ରତିଶ୍ରୁତି ଦେଇପାରୁନି—ତେବେ ବାବାଙ୍କୁ କହି ଚେଷ୍ଟା କରିବି । ହଉ, ତୁମେ ଦିନ ଆସ ଘରକୁ । ବାଟ ପାଇବ ତ ?

ରାଧା—ମୁଁ ପଚାରି ପଚାରି ଯାଇପାରିବି ।

ଦୁରଣା—ହଉ, ମୁଁ ଯାଉଛି । (ପ୍ରସ୍ଥାନ)

( ଉଭୟଙ୍କୁ ଦୃଷ୍ଟି ଦୃଷ୍ଟି ସ୍ମରଣା ସୁଲଗନ୍ଧ—ହଠାତ୍ ସୃଷ୍ଟି ରହିଥାଏ .ତା ପିତା ବାବୁ—ରାଧା ଏକ ଲମ୍ଫରେ ଦୃଷ୍ଟିଥାନ୍ତି ହସ୍ତକୁ—ହଠାତ୍ ତାଙ୍କ ପ୍ରକୃତସ୍ଥ ହୋଇ ସଂଧ୍ୟାକୁ ଛିନଏ ଦୃଷ୍ଟି ଗୁଲଗନ୍ଧ ଅପର ପାର୍ଶ୍ଵକୁ)

ରାଧା—ଋଷ ! (ମନକୁ ମନ ଡାକିଚନ୍ତି)—ତାପ ସୃଷ୍ଟି ଜଟିଳ ତାଙ୍କ ମୁହଁରେ

## ସପ୍ତମ ଦୃଶ୍ୟ

(ଅଲ୍ଲପୋର୍କେଟ୍ ଶାନ୍ତନୁ ବାବୁଙ୍କ ଘରର ବାରଣ୍ଡା—ପ୍ରବେଶ କରନ୍ତି ସ୍ମରଣା ଓ ପଛେ ପଛେ କାଳିଦାସ)

କାଳିଦାସ—ହେ ସ୍ଵ ନଗରର ସ୍ତ୍ରାଜ୍ ସ୍ମରଣା, ଲଭ ଉପରେ ମୋର ପରେଷ୍ଟ ଗବେଷଣା ରହିଛି । ମାନେ···ଭୁଲ ପାଇବା ସମ୍ପର୍କରେ ମୁଁ ଅନେକଗୁଡ଼ିଏ ତଥ୍ୟ ସଂଗ୍ରହ କରିଛି । ମାନେ···ମାନେ···ମାନେ—

ସ୍ମରଣା—ଭାଲ୍ଭିକ ଆପଣ ମାନେ ମାନେ କହୁଛନ୍ତି ? ଆପଣ ପାଗ୍ଳ, ମୋ ମନ ଭଲ ନାହିଁ ।

କାଳି—ସାଧାରଣ ଦର୍ଶନ ସ୍ମରଣା—ନା, ମନ ବ ଖରାପ—ଦରକାର ପାଇ ପାରେ । ହେ ସ୍ଵ ଲେଡ଼ି ସ୍ତ୍ରାଜ୍—

ଝରଣା—ଆପଣଙ୍କର କ'ଣ ଭଦ୍ରତା ଜ୍ଞାନ ବୋଲି ଟିକିଏ ନାହିଁ ଦାଶ ବାବୁ ?

କାଳି—ନାରୀମାନଙ୍କ ନିକଟରେ ସେଇଠାକୁ ମୁଁ ଭୁଲିଯାଏ—ଟୁ ବି ଭେରି ଫ୍ରାଙ୍କ୍ ଭୁଲିଯାଏ କଣ ମୋର ଆଦୌ ମନେ ପଡ଼େ ନା ।

ଝରଣା—ହଉ ମୁଁ ଗୀତ ଗାଉଛି—ତା'ହେଲେ ଆପଣଙ୍କର ସବୁ ମନେ ପଡ଼ିଯିବ ।

କାଳି—ନା-ନା ଝରଣା, ମୁଁ ସବୁ ଭୁଲିଯିବି ।

ଝରଣା—କ'ଣ ଭୁଲିଯିବେ ?

କାଳି—ଗୋଟାଏ ରଙ୍ଗିନ ନୁଡ୍‌ର କେତେଗୁଡ଼ାଏ ପୋଜ୍ ମନେ ପଡ଼ୁଯାଉଛି । ସେଗୁଡ଼ିକ ଟିକିଏ ଉପଭୋଗ୍ୟ ।

ଝରଣା—କ'ଣ ଏଇ ବାରଣ୍ଡାରେ ?

କାଳି—ସେଥିରେ କ'ଣ ଅଛି···ଏଇ ଦେଖ—(ଗୋଟାଏ ନୁଡ୍‌ର ପୋଜ୍ ଦେଖାଇଲେ)

ଝରଣା—କି ଅଭଦ୍ର ଲୋକ ଆପଣ ଦାଶବାବୁ ? ଆପଣଙ୍କର ଗୋଟାଏ ସାଧାରଣ ଜ୍ଞାନ ନାହିଁ ?

କାଳି—ଅସାଧାରଣ ପ୍ରତିଭା ନେଇ ଜନ୍ମ ନେଇଥିବାରୁ ଝ ନା, ସାଧାରଣ ପ୍ରତିଭା ଭିତରେ ପ୍ରବେଶ କରାଇପାରୁନି । ଟୁ ବି ଭେରି ଫ୍ରାଙ୍କ୍—

ଝରଣା—ଆଚ୍ଛା, ଆପଣ କ'ଣ ଏ ବର୍ଷ ପରୀକ୍ଷା ଦେବେ ନା ?

କାଳି—ଟୁ ବି ଭେରି ଫ୍ରାଙ୍କ୍—

ଝରଣା—ଏବର୍ଷ କ'ଣ ପରୀକ୍ଷା ଦେବେନି ?

କାଳି—( ଝରଣାର ହାତକୁ ଅନେଇ ) କିଏ ଡାକିଲା ରେ ? (ଭୁଲିଗଲେ) (ଝରଣା କାଳିବାବୁର ଗଳାପଟକୁ ଲକ୍ଷ୍ୟ

ରଘୁ—ମାଇ ! କେତେଥର ତତେ ପଚାରିଛି ପଚାରିଛି ତୋର ମନ ଦୁଃ··ଖ କଣ ମା ? ମୋ କଥା ଶୁଣିଲେ କି କାମ ଦେଖିଲେ ମୋତେ ଘରର ଝିଅ ବୋଲି ତ ମତେ ଜଣା ହୁଏ ନ !

ରାଧା—ଭଗବାନଙ୍କ ଖେଳଘର ବାବା । ତା'ର ଦୁନିଆରେ ଜନ୍ମହୋଇ ମଣିଷ ସେ କେତେବେଳେ ବଡ଼ ହୋଇ-ଯାଏ, ଆଉ କେତେବେଳେ ଗରିବ ହୋଇଯାଏ, ସେକଥା ମଣିଷ ନିଜେ ଜାଣିପାରେ ନା ।

ରଘୁ—ସତକଥା ମା' ! ତା ନ ହେଲେ ବଡ଼ଲୋକ ଝିଅ··· ମୋର ବଡ଼ ଘରର ଝିଅ କି ମୋର ବଡ଼ ଘରର ନାତି, ସେ କ'ଣ ଆଜି ଇମିତ ଘରରେ ଭିକ ମାଗି ପେଟ ପାଳୁଥାନ୍ତା ? ସତ ମା' ! ସବୁ ଭଗବାନଙ୍କର ଇଚ୍ଛା । ହଉ ମା, ତୁ ଏତ କାନ୍ଦୁଚୁ ତୋ ଶରୀର ଖରାପ କାହିଁକି ? ଦେଖେ—।

ରାଧା—[ ଟଙ୍କା ଦେଇସାରି ] ବାବା ! ଆଉ ଗୋଟିଏ କଥା— ତୁମେ ଟିକିଏ ହୁସିଆର ରହିଥାଅ ··ସେ ଯିମିତି ଝରଣା ମା' ପାଖରେ ବେଶି ମିଳାମିଶା ନ କରୁ । ବାବୁ ସେଥିପାଇଁ ରାଗ କରନ୍ତି । ଆଉ ତା ଛଡ଼ା, ବାର ଜାଗାରେ ବାର କଥା ଯିମିତି ଉଠିଲାଣି, ସେଥିରେ ଦୁଏତ ଚାକିରୁ ଛଡ଼ା ହୋଇଯିବେ ।

ରଘୁ—କ'ଣ କହୁଚ ମା' ! ସତ ମୋର ହେଲେ ମନାକଲେ ବି ଝରଣା ମା' ତ କଥା ଶୁଣୁ ନାହାନ୍ତି—ମୁଁ ଆଉ କ'ଣ କରିବି ? ଯାହା ହେବ ତା ଭାଗ୍ୟରେ—[ ଦୁଇ ହାତରେ ଆଣ୍ଠୁ ଧରିଲେ ]

ରାଧା—(ଆନମନା) ସତକଥା ବାବା ! ଭାଗ୍ୟ ।

## ଅଷ୍ଟମ ଦୃଶ୍ୟ

[ଅଲଟନ୍ସରୋଡ୍ ଶାନ୍ତନୁ ବାବୁଙ୍କ କକ୍ଷ—ଶାନ୍ତନୁ ବାବୁ ଘରଣୀର ଅବାଧ୍ୟତା ଓ ବାହାରର ନିନ୍ଦା ଅପବାଦ କଥା ଶୁଣି ଅସ୍ଥିର ହୋଇ ପଦଚାରଣା କରୁଥାନ୍ତି—ବାହାକୁ ଆସିଲା କାଳଦାଶ ।]

କାଳି—ଟ୍ରୁ ଚେଞ୍ଜ ପ୍ରାଙ୍କ୍ ସାବୁ ଚେଞ୍ଚେଗୁଡ଼ଏ ତଥ୍ୟ ସ୍ଫୁଟ କର ଆପଣଙ୍କ ମତ—

ଶାନ୍ତନୁ—କାଳଦାଶ ! ତୁମେ ବର୍ତ୍ତମାନ ଆସିପାର ।

କାଳି—ମୁଁ ଆସିପାରିବ ବାବୁ ।

ଶାନ୍ତନୁ—ଉହୋ, ଡେରି କର ନାହିଁ—ତୁମେ ଯାଅ ।

କାଳି—ଉହୋ, ପାଇଚାର—ଟ୍ରୁ ହେଲ ପ୍ରାଙ୍କ୍—

ଶାନ୍ତନୁ—ହଁ ତୁମେ ଯାଅ···ପରେ ଆସିବ ।

କାଳି—କିନ୍ତୁ ଆଜି ଉଦ୍ୟୋଗର୍ ଭଲ ଥିଲ ବାବୁ—ମନଟା ସ ହାଲୁକା ଥିଲ । ପୂଜ୍ ପିଲ୍‌ଂଦ୍ରରେ ବର୍ଣ୍ଣନା କହେ ଚୋଲ ଶୁଲ ଆସିଥିଲ ।

ଶାନ୍ତନୁ—[ଜୋରି] କାଳଦାଶ ।

କାଳି—ଆରମ୍ଭ କରିଦେବ ବାବୁ ?

ଶାନ୍ତନୁ—ନା-ନା-ଆଜି ମୋର ମନ ଭଲ ନାହିଁ, ମୁଁ କିଛି ଶୁଣି ପାରିବି ନାହିଁ—ତୁମେ ଯାଅ ।

କାଳି—ମନ ଭଲନାହିଁ ? ତାହେଲେ ନ୍ୟାକେଡ଼ ସୋଲ୍‌ଜର୍‌ସ୍ଙ୍କୁ କିଛି କହ । ଡୁ ବି ଭେରି ଫ୍ରାଙ୍କ୍—

ଶାନ୍ତନୁ—ମେନି ମେନି ଥ୍ୟାଙ୍କ୍ସ, ପ୍ଲିଜ୍ ଗେଟ୍‌ଆଉଟ୍—[ଶାନ୍ତନୁ ବାବୁଙ୍କ ମୁହଁକୁ ଚାହିଁ ରହିଲ କାଳିଦାସ] କଣ ଦେଖୁଛ ?

କାଳି—ଵା: ରେ ଆପଣଙ୍କ ମୁହଁର ସୋଜ୍‌ଟା...ହୁ ହ —

ଶାନ୍ତନୁ—ନଭ୍ର ପ୍ରାକ୍ ଗେଟ୍‌ଆଉଟ୍—[ସେ ଆସରେ ବାହାର କଢ଼ାଇଦେଲେ—ହଠାତ୍ ଭିତରେ ଆସିଲା ସ୍ୱରଣା]

ସ୍ୱରଣା—[ପିଠି ଉପରେ ହାତ ] ମତେ ଡକେଇଥିଲ ବାବା ?

ଶାନ୍ତନୁ—ନି ରେଳୁ ଆସ - (ସ୍ୱରଣା ନିକଟକୁ ଆସିଲା)—ଆଚ୍ଛା ସ୍ୱରଣା, ବାପା-ମାଆଙ୍କର ସ୍ନେହ ମମତାର ସୁଯୋଗ ନେଇ ଯେଉଁ ପିଲାମାନେ ଉଚ୍ଛୃଙ୍ଖଳ ହୋଇଯାଆନ୍ତି, ସେଥିପାଇଁ ଦୋଷ ହୁଏ କାହାର ?

ସ୍ୱରଣା—ମୁଁ କହି ବୁଝି ପାରୁନି ବାବା, ଆପଣ କ'ଣ କହିବାକୁ ଚାହାନ୍ତି ?

ଶାନ୍ତନୁ—ମୁଁ ତତେ କେବେ ଅର ମନା କରିଛି ଅନ୍ୟ ସାଙ୍ଗରେ ମିଳାମିଶା କରିବାକୁ ?

ସ୍ୱରଣା—କାହିଁକି ! ଆମମାନଙ୍କ ଭଦ୍ର ଘରର ପିଲାମାନଙ୍କ ପକ୍ଷ ମିଶିବା ପାଇଁ ବାହାର ଲୋକ ପଦସ୍ଥ ଯୋଗ୍ୟତା ନାହିଁ ? ତାଙ୍କୁ ଆପଣ ଘୃଣା କରୁଛନ୍ତି କାହିଁକି ?

ଶାନ୍ତନୁ—ସ୍ୱରଣା ! ତୋ ପ୍ରଶ୍ନର ଉତ୍ତର ଦେଇ ମୁଁ ବୁଝେଇନା । ମୁଁ ତାହା କହିଲେ ତତେ ତାହାହିଁ କରିବାକୁ ପଡ଼ିବ ।

ସ୍ୱରଣା—ବେଶ୍, ତାହାହେଲେ ମୋର କିଛି କହିବାର ନାହିଁ

ବାବା ! ତେବେ ଆପଣଙ୍କ ପ୍ରସ୍ତାବ ଅନୁଯାୟୀ ଏତେ ଶୀଘ୍ର ବିବାହ କରିବାକୁ ମୁଁ ପ୍ରସ୍ତୁତ ନୁହେଁ । ମୁଁ ଆହୁ କିଛି ପଢ଼ିବାକୁ ଚାହେଁ ।

ଶାନ୍ତନୁ—ସ୍ୱରଣା ! ତୋର ଏ ଔଦ୍ଧତ୍ୟ ସହ୍ୟ କରିବାର ଧୈର୍ଯ୍ୟ ମୋର ନାହିଁ ।

ସ୍ୱରଣା—ଯାହା ହେଉ, ଏଇଟା ମୋର ଶେଷ ଉକ୍ତି ।

[ ଚାଲିଗଲେ ]

ଶାନ୍ତନୁ—ସ୍ୱରଣା ! ଆହା ! ଅଲକ୍ଷଣ୍ !

[ ଉତ୍ତେଜିତ ହୋଇ ଶାନ୍ତନୁ ବାବୁ ପଦଚାରଣା କରିବାକୁ ଲାଗିଲେ—ବାହାରୁ ଆସିଚନ୍ତି ରଘୁନାଥ ଓ ଚନ୍ଦ୍ର । ]

ଶାନ୍ତନୁ—ରଘୁନାଥ, ତୁମେ ଓ ତୁମର ଚନ୍ଦ୍ର ଏଇ ମୁହୂର୍ତ୍ତରେ ତୁମର ଜିନିଷପତ୍ର ନେଇ ମୋ ଘରୁ ବାହାରିଯାଅ । ଆଉ ଗୋଟିଏ ମିନିଟ୍ ବି ତୁମକୁ ମୁଁ ଏଠି ଦେଖିବାକୁ ଚାହେଁନା ।

ରଘୁ—ଏ ବୟସରେ ମୁଁ କୁଆଡ଼େ ଯିବି ବାବୁ ? ଆଉ ତା ଛଡ଼ା ଚନ୍ଦ୍ରର ପରୀକ୍ଷା ବି ନିକଟ ହୋଇ ଆସିଲାଣି ।

ଶାନ୍ତନୁ—ସେଥିରେ ମୋର କିଛି ଯାଏ ଆସେ ନା—ମୁଁ ତୁମକୁ ଯାହା କହିଲି, ସେଇ ମୋର ଶେଷ ଉକ୍ତି ।

ଚନ୍ଦ୍ର—ଆମର ଦୋଷ କଅଣ ଆଜ୍ଞା ? କିମିତି ଅପରାଧରେ ଆମକୁ ତଡ଼ିଦେଲେ—

ଶାନ୍ତନୁ—ରଘୁନାଥ ! ତୁମକୁ କଣ ମୋ କଥା ଶୁଝିଲା ନାହିଁ ?

ଚନ୍ଦ୍ର—ଟିକା ଦୋଷରେ ଏମିତି ଗୁରୁତର ଶାସ୍ତି କାହିଁକି ଦଉଛନ୍ତି ଆଜ୍ଞା, ମୁଁ ଆପଣଙ୍କୁ ହାତଯୋଡ଼ି କହୁଛି—ଆପଣ ମୋର

ଚେଷ୍ଟା ଶେଷ ପର୍ଯ୍ୟନ୍ତ ଆମକୁ ଏଠି ରହିବାକୁ ଦଅନ୍ତୁ ।
ତା'ପରେ—

ଶାନ୍ତନୁ—ମୁଁ ତୁମ ମନ୍ଦ କଥା ଶୁଣିବାକୁ ଚାହେଁନା, ହରି—ରଘୁନାଥ ! ତୁମେ ଠିଆ ହୋଇ ରହିଲ କାହିଁକି ?

ରଘୁ—ଗରିବ ପିଲାଟାକୁ ଦୟା କରନ୍ତୁ ଆଜ୍ଞା !

ଶାନ୍ତନୁ—ଦୟା ? ତୁମମାନଙ୍କୁ ଦୟା କରି ଜୀବନରେ ମୁଁ ଯଥେଷ୍ଟ ଶିକ୍ଷା ପାଇଛି । ମୁଁ ଆଜି ବୁଝିଲି, ତୁମମାନଙ୍କ ପରି ଦୁର୍ବୃତ୍ତ ଲୋକଙ୍କୁ ଆଶ୍ରୟ ଦେବା ମଣିଷ ପକ୍ଷର ହଠକାରିତା ।

ରଘୁ—ମୋ ଦୋଷ ତ କିଛି ନିତାନ୍ତ କରିନି ବାବୁ—ତା ଛଡ଼ା, ଯଦି ଦୋଷ ବି କରିଥାଏ, ଆପଣ ନିଜ ହାତରେ ତାକୁ ଦଣ୍ଡ ଦିଅନ୍ତୁ···ଶାସ୍ତି ଦିଅନ୍ତୁ ।

ଶାନ୍ତନୁ—ଶାସ୍ତି ? ମୁଁ ତାକୁ ଶାସ୍ତି ଦେବା ପୂର୍ବରୁ ସେ ମୋତେ ଯଥେଷ୍ଟ ଶାସ୍ତି ଦେଇ ସାରିଛି ରଘୁନାଥ । ମାଆ ଯାହାର ନିଜର ସ୍ୱାମୀକୁ ବିଷ ଦେଇ ହତ୍ୟା କରିପାରେ, ସେମିତି ଡାହାଣୀ ଉଦରର କୀଟ ପୁଅଠୁ କ'ଣ ବା ଆଉ ଆଶା କରାଯାଆନ୍ତା !

ହରି—ପ୍ରଭୁ ! ଆପଣଙ୍କର ଆଶ୍ରିତ ସେବକମାନେ, ଆପଣଙ୍କ ହୁକୁମ୍ ମାନିବାକୁ ଆମେ ବାଧ୍ୟ । କିନ୍ତୁ ଖୁଣ୍ଟରେ ବାନ୍ଧି ଭଲ ଜଣକୁ ଆଘାତ ଦେବା ଆପଣଙ୍କ ପରି ଶିକ୍ଷିତ ଲୋକ ପକ୍ଷରେ—

ଶାନ୍ତନୁ—ଚାକର ମାନେ ! ତୁମେ କ'ଣ ମୋ ପାଖରେ ଶିକ୍ଷା ଦେବ ?

[ ଏତିକି ବେଳେ ସିଡ଼ି ଉପରେ ଦେଖାଦେଇଛି ସ୍ୱପ୍ନା ।
ଶୁଣୁଛି ସବୁ ]

ରଘୁ—ନା ବାବୁ, ଆପଣଙ୍କ ଅନ୍ନଜଳରେ ପ୍ରତିପାଳିତ ହୋଇ ଆପଣଙ୍କ ଛତ୍ର ଛାୟା ତଳେ ବଢ଼ି ଆପଣଙ୍କ ସହିତ ଝଗଡ଼ା କଲାଭଳି ଧୃଷ୍ଟତା, ଜଣେ ସ୍ୱାମୀଭକ୍ତ ଚାକରର ପୁଅ ହୋଇଲେ ମଧ୍ୟ ମୋର ନାହିଁ । ମତେ କ୍ଷମା କରିବେ ବାବୁ... ଆପଣଙ୍କ ଆଜ୍ଞାପତ୍ର ନରାଜ ଅମାନ୍ୟ କରିବାକୁ—

ଶାନ୍ତନୁ—ଷଟ୍-ଅପ୍ । ଆକ୍ଷେପଟା ଗିନା ସଞ୍ଜ ଡାକିଲ ନା— ପୋଡାରେ ଦୁଇ ଚାଟିଟା ବାଜିଲେ ବେଶ ଠିକ୍ ହୋଇଯିବ ? ଜାଣିଛୁ !

ରଘୁ—ବାବୁ ! ନେଇପାରେ ମୁଁ ଆପଣଙ୍କର ଆଶ୍ରିତ—ନେଇ-ପାରେ ମୁଁ ଭୁଲ ଗୋଲାମ ଦାଣ୍ଡର ଲକାଘ—କିନ୍ତୁ ଆପଣଙ୍କ ପର ହୃଦୟହୀନ ନୁହେଁ... ଅପରାଧୀ ନୁହେଁ ।

ଶାନ୍ତନୁ—ଷଟ୍-ଅପ୍ (ମାରିଲେ ଗୋଟାଏ ଚାପୁଡ଼ା ) ସ୍କାଉଣ୍ଡ୍ରେଲ୍ ! ଗେଟ୍ଆଉଟ୍ ( ଠେଲିଆ ଦେଇ ବାହାର କରିଦେଲେ )

ରଘୁ—ବାବୁ !

ଶାନ୍ତନୁ—ଆଇ-ସେ ଗେଟ୍ ଆଉଟ୍—

(ରଘୁକୁ ମଧ୍ୟ ଠେଲିଆ ଦେଇ ବାହାର କରିଦେଲେ ଓ ନିଜେ ମଧ୍ୟ ଅନ୍ୟ ଦିଗକୁ ଚାଲିଗଲେ । ସ୍ୱପ୍ନା ଏସବୁ ନୀରବରେ ଦେଖୁଥିଲା - ଆଖିରେ ତାର ଧାର ଧାର ଲୁହ । ଶାନ୍ତନୁ ବାବୁଙ୍କ ପ୍ରସ୍ଥାନ ପରେ ସିଡ଼ିରୁ ତଳକୁ ଆସି— )

ସ୍ୱପ୍ନା—ଶ୍ରୀକାନ୍ତ ! ସେ ଚାଲିଗଲେ ଆସି ଥରେ ଆଖି ଖୋଲ

ଦେଖି ଯାଅ, ଶ୍ରୀକାନ୍ତ ! ସ୍ୱାମୀହନ୍ତା ବଧୂର ଏଇ ରକ୍ତ ଚୌଧୁରୀ ତା ଆଖି ସାମନାରେ କପର ଜମାଟ ବାନ୍ଧୁଛି··· ଆମେରିକା ଯାଉଛି !



# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

(ମେଲ୍ଭିନ୍ ସ୍ମିଥଙ୍କ ଘର ଅଗଣା—ଷଣ୍ଡ ମଠା ପିନ୍ଧି ଭକ୍ତ ବେଶରେ ପିଣ୍ଡାରେ ବସି ମାଳ ଗଡ଼ାଉଛନ୍ତି ।)

ଷଣ୍ଡ—ରାମା-ରାମା···ହାଉ ହାଉ—ଓରେ ଓ୍ୱାସ୍ତୁ, ଉଦ୍ଭ୍ରାନ୍ତ୍ୟାର କଳଂକର ଅମୂଲ୍ୟ କଳ୍ପନା ନାହିଁରେ ? ଆବ୍ବା ! କପ ବେପାର କରୁଚୁ ଭଗେ ଆଜ୍ଞା କଣ—ରାମା ରାମା—ହାଉ ହାଉ ! କରେ ଓ୍ୱାସ୍ତୁ, ଗଳ୍ପ ନା ନାହିଁରେ ? ଯା—ବେଶୀ ପାଗର···ସେ ଦଉ ଘଡ଼ରେ କପ ଡାଉନି କରୁଚୁ ଭେ ? ଭଲ ବେପାର କରିବୁ ! ପିଲ ଲୁକ ଲୁଚୁନ କନ୍ଥ—ରାମା ରାମା—ହାଉ ହାଉ··(ପ୍ରବେଶ କରନ୍ତି ସ୍ୱର୍ଣ୍ଣମଣି—ବି. ଏ.ରେ ଶାସ୍ତ୍ରୀଙ୍କ ଅବସ୍ଥା ଅତି ଧାଧାଖଳ, ପୋଷାକ ପତ୍ରରେ ପୁଣି ଜଟିଳ ଦରିଦ୍ରତା । )

ରୁଣୁ—ଆପଣଙ୍କର ଗୋଡ଼ ଧରୁଛି ରାଓ ବାବୁ, ମତେ ଆଉ
ଅପମାନ କରନ୍ତୁ ନାହିଁ···ଉପହାସ କରନ୍ତୁ ନାହିଁ ।

ରାଓ—ଆରେ ଆରେ, ତୁମେ ହଜୁର୍ କସ ପାଇଁ ? ମୋ ଭୁଲ
ମନେ କରୁଛ ଦେଉଛ କି ? ଯା—ଯା—ମନେ ଚୁଁ ନା ।
ମୋ ପିଲାଥିଲାବେଳକୁ ଏଡ଼ା କଥ ପାଉଛି କେବେ ? ତୁମେ
ଦେଉଛ ?

ରୁଣୁ—ଆପଣ ଏତେଟା ନିଷ୍ଠୁର ହୁଅନ୍ତୁ ନାହିଁ ରାଓ ବାବୁ ! ମତେ
ଟଙ୍କା କେତେଟା ସାହାଯ୍ୟ କରନ୍ତୁ—ତା ନ ହେଲେ ଏ
ଟି. ବି. ରୋଗ ମତେ ନ ମାରି ଛାଡ଼ିବ ନାହିଁ ।

ରାଓ—ଭଲ କଥା—ତମେ ମରିଗଲେ ଆମେ ବଡ଼ ଭଲ ହେବ
ଦେଖ, ତମର ପରି ପାପୀ ଲୋକ ଥିଲେ ଏ ବସୁଧା ଫାଟି-
ଯିବ, ଜାଣିଛ ନା ?

ରୁଣୁ—ଏତେଟା ନିର୍ଦ୍ଦୟ ହୁଅନ୍ତୁ ନାହିଁ ରାଓ ବାବୁ !

ରାଓ—କଅଣ କହିଲୁ, ଦୟା ? ତୋତେ ଦୟା କରିବି ? ତୋତେ
ଦୟା କଲେ ମତେ ବଡ଼ କଷ୍ଟ ହେଉଥିବ ।

ରୁଣୁ—(ଗୋଡ଼ତଳେ ପଡ଼ି) ରାଓ ବାବୁ !

ରାଓ—ଉଠ୍-ଉଠ୍-ଉଠ୍ । ଦେଖ, ମତେ ଜଣାଣ ଦେବା ଦେଖିପାରନ୍ତି ।
ତୋ ବୋପାର ଟଙ୍କା ପଡ଼ିଛି କଅଣ ଏଠି ?

ରୁଣୁ—(ଉଠି) ରାଓ ବାବୁ ।

ରାଓ—ବେଟୀ ଯିବୁ ମୋ ଘରୁ ନା ଆମମାନେ ଡାକିବ ଚାକରମାନଙ୍କୁ ?

ରୁଣୁ—ରାଓ ବାବୁ ।

ରାଓ—(ହସି) ଭଲ ଲୋକ ନାହିଁ ରେ ତୁ । ତୋତେ ଆମେ ମାଡ଼
ଆଜି ଦେବାର ଅଛି । କଣ କେବେ ? ଏତେ କହୁଥିଲା-
ବେଳକୁ···ଯା···ଯା···ଯା—ଜୋଜା ଉଧାଉ···ଯୋ
···ଯୋ···(ମାଡ଼ ମାରି ଘରୁ ବାହାର କରିଦେଲେ)

## ଦ୍ୱିତୀୟ ଦୃଶ୍ୟ

(କଟକର ଜଗତପୁରଠାରେ ଗୋଟିଏ ଛୋଟିଆ ବ୍ଲକଘର··· ଘରର ଗୋଟିଏ ଛୋଟିଆ ଦୁଆର···ଦୁଆର ସାମନାରେ ଅଗଣା···ଅଗଣାରେ ଗୋଟିଏ ଦଉଡ଼ିଆ-ଖଟ—ଗୋଟାଏ ପାଖରୁ ଦୂଳାଏ ନାଠ ପଡ଼ିଛି···ଘର କଣରୁ ଗୋଟିଏ ପାଟି··· ପଟିଅପରେ ଦୁ ତୁଣା ଟଙ୍କିଆ ଗୋଟାଏ···ତା ପାଖରୁ ଲଣ୍ଠନ ରଖିବା ଟୁଲ୍ ଫୁଟେ ଉଚ୍ଚର··· ଲଣ୍ଠନଟିଏ ମିଞ୍ଜି ମିଞ୍ଜି ହୋଇ ଜଳୁଛି— ବାରଣ୍ଡା ତଳକୁ ପଥରଟିଏ ପଡ଼ିଛି···ତା ଉପରେ ଗାଧୁଆ ଗାଧୁଆ ହୁଏ···ପଥର ପାଖରୁ ମାଟି ହାଣ୍ଡିରେ ପାଣି ହାଣ୍ଡିଏ ଥୁଆ ହୋଇଛି— ପନ୍ଦ୍ର ଚନ୍ଦ୍ର ନେହଲ ଆସୁଛି···ପିନ୍‌ଉଠିଲା ପରେ ଦେଖାଗଲା ରଣ ଖଣ୍ଡିଏ ଫଟା ପେଣ୍ଟଲୁନ୍ ଓ ଗେଞ୍ଜି ପିନ୍ଧି ପଥର ଉପରେ ବସି କଳା ପପା କରୁଛି । ତାପରେ ବୁଝା ଦେହରେ ଖଣ୍ଡିଏ ସାର୍ଟ —ଶରଚ୍ଚନ୍ଦ୍ର ଆସିଲେ ରଘୁନାଥ । )

ରଘୁ—ହଁଶ ! ହବ !

ହରି—କ'ଣ ?

ରଘୁ—କରେ ତାତ ଆଜ ସମୟ ମିଳିଲାନି ଲୁଗା ସଫା କରିବାକୁ ?
ଏ ଘଣ୍ଟା ବେଳଠାରେ ଲୁଗା କାଚିକି ସଫା ହଉଛି ଶୁଣେ ?

ହରି—(ନୀରବ)

ରଘୁ—କରେ କଥା କ'ଣ ?

ହରି—ନା—ସେ କିଛି ନୁହେଁ ଅଜା !

ରଘୁ—କିଛି ତ ନୁହେଁ—ଅଜ ଏମିତ ଲାଗିରୁ କାର୍ତ୍ତିକ ସେ ଲୁଗା ପାଇନରେ ?

ହରି—(ନୀରବ)

ରଘୁ—କି ରେ କହୁନୁ କାହିଁକି ?

ହରି—ଆଜି ସବୁଘରେର ଲୁଗା ସଫାହେବାର ଶୁଣିଲେ ନାଇ ଦଶଟାବେଳେ ଶିବ ଭୁବନେଶ୍ୱର ଧ୍ୱଜପାଇଁ ଉଠରାଇ ଦେବାକୁ । ଏଥର—ବୁଝିଲ ?

ରଘୁ—ହରି, ମନେ ତଡ଼ାନା କହୁଛି—ନନ୍ଦଙ୍କର ସେ କାମ । (ପାଖକୁ ଆସି) କହେ ବଦ କଲ୍ ?

ହରି—ଅଜା ! କାର୍ତ୍ତିକ ମନେ ତରଙ୍ଗ କରୁଛ କହିଲ ?

ରଘୁ—ହଇରେ ମୁଁ ପାରତ ତରଙ୍ଗ କରୁଛି ନା ତୁ ମନେ ଗଡ଼ୁଛୁ ଭେଲି ? ଜଟିଳ୍ ଜଡ଼—କହୁଛି ।

ହରି—ଯେତେବେଳେ ଅଜା—(ଠିଆହୋଇ) କାର୍ତ୍ତିକ ହକାର ଦନ୍ଦରୁ ମୋ ପାଖରେ ସେମିତି ଲାଗିଚ କହିଲ ? କିଛି ତ କଥା ବୁଝିବ ନି, ଖାଲି ହାଉହାଉ ହଉଥିବ ।

ରଘୁ—କଣ କହିଲୁ—ହାଉ ହାଉ ହଉଛି ? ଏଁ ବଢା ମନେ, କ'ଣ ମୁଁ ହାଉ ହାଉ ହେଲି—ବଢା !

ହରି—ମୁଁ ଆଜ ତମକୁ ବୁଝେଇ ପାରିବି ନି ଅଜା ।—ଏ ବୁଢ଼ା

ବନ୍ଧୁଘରେ ହେଲେ ନିଜେ ଶାନ୍ତିରେ ବିଶ୍ରାମ ନବାକୁ
ଚେଷ୍ଟାକର ! ନିଜପର ଘାଟକୁ ଶୁଜଙ୍ଘଟା ଗଡ଼ାଇଗଲେ
ଆମକୁ ଆଜ ଏତେଟା ବଡ଼ଗଞ୍ଜ ହବାକୁ ପଡ଼ିବ ନା—
ବୁଝିଲ !

ରଘୁ—ଆରେ ଠା— ଠା— ମତେ ଶିଖେଇଲ ବୁଦ୍ଧି ! ହଉ !
ଗୋଟାଏ କଥା କହିଦେଲ, ମତେ ତୁ ଆଉ ଚଢ଼ାନା ! ହଉ ରେ
ହାଡ଼ଭଙ୍ଗା ମେହେନତ କରି ତରତ ଏତେ ବାଟ ନେଇ
ଆସିଲି; ଏଇ ଶେଷବେଳକୁ ତୁ ଯିବୁ ଗୃହକର୍ମ କଟାବାକୁ !
ଆଜି ତୋ ରୋଜଗାରରୁ ମୁଁ ବସି ଖାଲି ଭାତ ଖାଇବ !

ମଧୁ—ନା, କାହିଁକି ଖାଇବ ମୋ ରୋଜଗାରରୁ ? ମୋ ଭଜଆ
ଭେଣ୍ଡା ପୁଅ ଘରେ ବସିଥିବ ଆଉ ତୁମେ ଯିବ ଏ ବନ୍ଧୁ-
ଘରେ କୁଲିଗିରି କରି ମଜୁରି ଖଟି ମତେ ଆଣି ଖାଇବାକୁ
ଦେବ । ତୁମେ ଜାଣିଚ ଓକିଲଙ୍କରେ ଶେଷ ବର୍ଷରେ ଚଢ଼ା
ଖର୍ଚ୍ଚ କେତେ ହୁଏ ? ଶାନ୍ତନୁବାବୁ ସାହାଯ୍ୟ କରୁଥିଲେ
ଚବାଲି ଚଳିଯାଉଥିଲା । ଏ ବନ୍ଧୁଘରେ କୁଲିଗିରି କରି
ଦିନ ରାତି ଖଟିଲେ ତୁମ ଦେହ ଆଉ ରହିବଟି ? ମୋର
ଇମିତ ବସିରହି ତୁମର ଖଟିବାଟାକୁ ବାହାରର ଲୋକେ
କ'ଣ କହୁଚନ୍ତି ଶୁଣିଚ ?

ରଘୁ—ହିଁ, କ'ଣ କହେଲ ଲୁହଲୁ । ମୁଁ ମୋର କୁଲିଗିରି କଲି,
ମଜୁରି ଖଟିଲି ତାଙ୍କ ବୋପାର କ'ଣ ମାନ ସମ୍ମାନ ହାନି
ହୋଇଗଲା ? ହଉ ରେ ତାଙ୍କର କ'ଣ ଗଲା ! ମୁଁ
ଜାଣେ ପର—ଗୁଣଆଙ୍କର ଆଜି ଦାମ କ'ଣ !

ମଧୁ—ହେଇ ଶୁଣିଲ ତାଙ୍କ ଉପରେ ଏଥର—

ରଘୁ—ଆରେ ଯା—ଇଲୁଆ, ମଲୁଆ ସେଠୁ ଲୋକ ହେଲେଣି ମଣିଷ କହିବେ କଥା !

ହରି—ସେଇଥିପାଇଁ ତ ବୁଝେଇ କହିବି, ଆଜ୍ଞା କ'ଣ ?

ରଘୁ—ଆରେ ବାବା ! ଏ ହରି ! ସେମାନଙ୍କ କଥାକୁ ତୁ କାନ ଦେ'ନା ବାବା ! ପଇସାଟା ତୋ'ର ସଙ୍ଗରେ ଥିଲେ ଆମର ସବୁ ଦୁଃଖ ଛୁଟିଯିବ । ଗୋଟାଏ ବର୍ଷର କଥା—କେତେ ଆଶା କରି ତାରେ ହରି...ତୁ ଓକିଲ ହବୁ, କଳା ପୋଷାକ ପିନ୍ଧି ମାନଙ୍କୁ ବାବୁଙ୍କ ପରି ମକଦ୍ଦମା ଲଢ଼ିବୁ—କେତେ ଲୋକଙ୍କ ହାତ ଯାଚିଲେ ଟଙ୍କା ଦୁଆରେ ଜମା ହେବେ... ବାବୁ, ବାବୁ କହି ଡାକ ପକେଇବେ...କେତେ ମାନସମ୍ମାନ ପାଇବୁ ।

ହରି—ଓଃ ଅଜା ! ଏତ କହୁଛ ଅଜା...ମୋ ପାଖରେ ସେମିତି ଲୋକେଇ ମନରେ ଜଡ଼ି ତୁଷାରେ ପକେଇଛ । ମାନ ସମ୍ମାନ ! ଗୋଟାଏ ଖୁନୀ ଆସାମୀର ଜୁଅଁ କ ମାନ ସମ୍ମାନ ପାଇବ ? କାହାଠୁ ? ସେପରି ସମ୍ମାନ ପାଇବ—ତାହା ଶାନ୍ତନୁବାବୁ ସେଦିନ ଡମରି ଅସ୍ତ ସାମନାରେ ମତେ ଦେଲେ—ବୁଝିଲ ?

ରଘୁ—ହରି !

ହରି—ତୁମେ ମୋତେ କିଛି ବୁଝନ ଅଜା...କିଛି ବୁଝନ । ଓକିଲାତି ପାସ କରିଥିଲେ ହବାର ସୁଖ ସ୍ୱପ୍ନରେ ବୁଡ଼ିରହି ତୁମକୁ ମୁଁ ଏତେଇ ପାନ୍ଥ ନ ଦେଇଛି ମୋତେ ଦେବାକୁ ତୁମ ପାଇଁ ପଇସା ରୋଜଗାର କରିବାକୁ...ତା ଅପେକ୍ଷା ବରଂ ସାଧାରଣ ଶ୍ରମିକ ପାଇଁ ତୁମ ମୁଣ୍ଡରେ ଗୋଟାଏ ସେଯାପାଣି ଦେବାଟାକୁ ମୁଁ ବେଶୀ ପସନ୍ଦ କରିବି ।

ରଘୁ—ଏଇଥି ? ତୁ ସ୍ୱକଷ୍ଟ କରିବାକୁ ଯିବୁ ମତେ ପୋଷିବାକୁ ତ ?
ନେଣ୍, ଏବେ ସ୍ୱଳ୍ପପାଇଲା ମୁଁ [ ଯିବାକୁ ବାହାରିଲ ]

ହରି—କୁଆଡ଼େ ?

ରଘୁ—ମୁଆଡ଼େ ମୋର ଇଚ୍ଛା । [ ପ୍ରସ୍ଥାନ ]

ହରି—ଅଜା ! ଅଜା ! ଦେଖ ଯାଅ…ଯାହା ବୁଝିଥିବ ସେଇଆ, ଅଚ୍ଛା ନେଇ !

[ ହରି ଯାଇ ବାରଣ୍ଡାରେ ବସିଲା—ଜୀବନର ସମସ୍ତ କଥା ଗୋଟି ଗୋଟି ହୋଇ ମନେପଡ଼ିଲା…ହଠାତ୍ ଉଠି ଯାଇ ଲୁଗା କାନ୍ଥ ବସିଲା ଏବଂ ମନକୁ ମନ କହୁଥିଲା ]

ମୋଟ ବନ୍ଧନ୍ । ମଜୁରି ଷଟିଦ । ଉତ୍କଳ ଦେଶ…ହୁଁ ।
ନମାଷ୍ଟ ନବାଙ୍ଗ ବାଣ୍ଟେଷ୍ଟ ପଢ଼େଇବାକୁ ବଳିଥ ତଠେଇ
ଦଦ…ଲଟେକେଶ ମୋ ପାଇଁରେ, ଗୋଷ୍ଠ ଏ ମିଛରେ ।

[ ହରିର ଅଲକ୍ଷ୍ୟରେ ସ୍ୱରଣା ଆସି ଠିଆ ହୋଇଛି—ତା କଥା ଶୁଣୁଛି—ଆଖିରୁ ବହିଯାଉଛି ଲୁହ—ହଠାତ୍ ଦେଖି ପାରିଲା ହରି—ତାର ଅବସ୍ଥାକୁ ଲକ୍ଷ୍ୟକରି, ହରି ମଧ୍ୟ କାନ୍ଦି ପକେଇଛି ମୁହଁ ତଳକୁ କରି—ତା ପରେ ଆସ୍ତେ ଆସ୍ତେ ଉଠି ଯାଇଛି ସ୍ୱରଣା ପାଖକୁ । ]

ହରି—ତୁମେ କୁଆଡ଼େ ସ୍ୱରଣା ?

ସ୍ୱରଣା—(ନୀରବ)

ହରି—ମୁଁ ଯଦି ନେଲେ ସଜନୀମାନଙ୍କର ପାଦ ଏ ଶେଷବ ଭଙ୍ଗା କୁଡ଼ିଆରେ ?

ସ୍ୱରଣା—(ମୁହଁରେ ହାତଦେଇ କାନ୍ଦିଉଠିଛି ) ହରି !

ହରି—ଗଣ୍ଡବ ପ୍ରଜାଠୁ ଆଜି କ'ଣ ପ୍ରାପ୍ୟ ବାକି ଅଛି ରାଜକୁମାରୀଙ୍କର ! କୋଡ଼ାମାଡ଼ ? ଜେଲ୍ ? ଫାଶି ?

ଝରଣା—(ହରିଙ୍କୁ ସ୍ପର୍ଶି) ହରି !

ହରି—କୁହନ୍ତୁ !

ଝରଣା—[ ହରିଙ୍କର ହାତଧରି ପକେଇ ] ମୁଁ ଅପରାଧ କରିଛି ହରି, ମୁଁ ଅପରାଧ କରିଛି । ମୁଁ ତୁମର ସର୍ବନାଶ କରିଛି ।

ହରି—ଅନ୍ୟର ସର୍ବନାଶ କରିବା ତୁମର ଗୋଟାଏ ସଉକ ରାଜକୁମାରୀ !

ଝରଣା—ହରି ! ଜୀବନରେ ବହୁତ ସ୍ୱପ୍ନ ଦେଖିଥିଲି । ସେଥିପାଇଁ ବାପାଙ୍କର ଅବାଧ ହବା ଯୋଗେ ସାରଣ ନିଜର ନାରୀତ୍ୱକୁ ତ ଅଜାଡ଼ି ଦେଇଥିଲି ତୁମରି ପାଦତଳେ । ତୁମେ ମୋତେ କ୍ଷମାକର ହରି... ତୁମେ ମୋତେ କ୍ଷମାକର ।

ହରି—ମୋ ମତରେ ତୁମେ ଏଠିକି ଆସି ବଡ଼ ଅନ୍ୟାୟ କରିଛ ଝରଣା । ତୁମେ ଚାଲିଯାଅ ।

ଝରଣା—ଗାଳି ତୁମକୁ ନୁହେଁ ହରି... ଦୁନିଆରେ କାହାକୁ ମୁହଁ ଦେଖେଇବାର ଅଧିକାର ମୋର ନାହିଁ ।

ହରି—ଓଃ, ବନ୍ଦକର ଝରଣା, ବନ୍ଦକର—ତୁମେ ଏଠୁ ଯାଅ । ଆଉ କେବେ ପାଇଁ ମଧ୍ୟ ଏଠାକୁ ଆସିବାକୁ ଚେଷ୍ଟା କରନା ।

ଝରଣା—ମୁଁ ବୁଝିପାରେ ହରି, ବୁଝିପାରେ । ମୋତେ ତୁମର କ୍ଷମା କରିବା ମଧ୍ୟ ଉଚିତ ନୁହେଁ । ତେବେ ବାପାଙ୍କ ପାଇଁ ମୁଁ ହାତ ଯୋଡ଼ି ଧରୁଛି ହରି, ତୁମେ ତାଙ୍କୁ କ୍ଷମା କର । ନିଜର ଖାନ୍ଦାନ, ନିଜର ବଂଶ ପରମ୍ପରାରେ ଭୁଲି ଯେ

ଭୁଲ୍ କରୁଛନ୍ତି···ସେ ଅନ୍ୟାୟ କରୁଛନ୍ତି···ଅପରାଧ କରୁଛନ୍ତି ।

ଦତ୍ତ—ଝରଣା ! କଣ ପରମାର୍ଥ ! କଣ ପରମାର୍ଥର ଅର୍ଥ ତୁମେ ଜାଣିଛ କୁହ ?

ଝରଣା—ଦତ୍ତ, ଏସବୁ ତୁମେ କ'ଣ କହୁଚ ?

ଦତ୍ତ—ପାପାର ବାବା ନିଜର ଆତ୍ମକାହାଁ ଓ କଣପରମାର୍ଥର ରଙ୍ଗ ଦେଖେଇ ମଣିଷକୁ ମଣିଷ ରୂପରେ ବି ଦେଖିବାକୁ ଚାହାଁନ୍ତି ନା, ତାଙ୍କର ନିଜ ଆମି ବାହାରେ କେତେ ଦରିଦ୍ର, ଅସହାୟ, ଲୁକ୍କାୟିତ କାହାଁକ ପାଖରେ ପ୍ରେମ ନିବେଦନ କରି ବୁଲନ୍ତି—ସେ ଖାନ୍‌ଦାନର ମାନେ କଣ ? ସେ କଣ ପରମାର୍ଥର ଅର୍ଥ କଣ ?

ଝରଣା—ଦତ୍ତ ! ସେ ତୁମେ କ'ଣ କହୁଚ ? ତୁମେ କ'ଣ ଆଜି ତୁମର ମନୁଷ୍ୟତ୍ୱକୁ ବି ଭୁଲି ଯାଇଚ ?

ଦତ୍ତ—ସଟ ଅପ୍ ଝରଣା, ସଟଅପ୍—ତୁମଭଳି ପଶୁଙ୍କ ସହିତ ମୁଁ କଥାବାର୍ତ୍ତା କରିବାକୁ ଚାହେଁ ନା—ତୁମେ ଚାଲିଯାଅ ।

ଝରଣା—ଦତ୍ତ ! ଆଜି ଦତ୍ତ, ଆଜି । ( ଦଉଡ଼ି ଚାଲିଯାଇଛି ବାହାରକୁ )

[ଦତ୍ତ ଚା ପିବା ବାଟକୁ ଚାହିଁ ରହିଛି—ତା ପରେ ଚମକି 'ଝରଣା' ଜଣ୍ଡ ଆଗେଇ ଯାଇଛି ଓ ଅଟକି ଯାଇଛି—ଉତ୍ତାକଣ୍ଠରେ ମନକୁ ମନ କହୁଛି "ଆଇ ଆମ ହେଲ୍‌ପ୍‌ଲେସ୍ ଝରଣା, ଆଇ ଆମ୍ ହେଲପ୍‌ଲେସ୍—ତା ପରେ ଖାଲି ଲଭ ପାତ୍ରଣ୍ଡ ହେଲେଇ ଆଣିଛି ଲୁଚା ପାଖକୁ···ଲୁଗା ଟାକୁ ପିନ୍ଧିବା ବାହାରେ ଯିଏ କରିବା ଉଦ୍ଦେଶ୍ୟରେ

—ଏତିକିବେଳେ ମଞ୍ଚ ଅନ୍ଧକାର ହୋଇ-
ଯାଉଛି—ଏଇ ଦୃଶ୍ୟର କିଛି ସମୟ ପରେ
ଘଟଣା—ଲିଖୁଥିବା ଲକ୍ଷ୍ମଣଙ୍କ ହଠାତ୍ ଜଳ
ଉଠିଲା—ଦେଖାଗଲା ହଟା ବନ୍ଧୁକଟେ ଧରି
ଶୋଇ ଯାଇଛି—ତାର ଦେହ ଲୁଗା ଓ ପାର୍ଟ
ଛୁଟନ୍ତି—ବ୍ୟସ୍ତତାବରେ ପ୍ରବେଶ କରିଛନ୍ତି
ରଘୁ ।

ରଘୁ—ହରି ! ହରି ! (ଉଠି ପଡ଼ି) ହରି, ବୁଲିଆ ବାବା
ବୁଲିଆ—ଆଜି ଗୋଟାଏ ମିଶାଇ୍ ମୁଁ ତେଣୁ କରିବା
—ମୋ ମାଆଙ୍କର ମୁଁ ବୁଲିଆ ।

ହରି—ଭୁଆଉଛ ? କଣ ହେଲା କି ଅଜା ?

ରଘୁ—ମୁଁ କିଛି ଚରୁଗାଇ ହେଲା···ମୁଁ ବୁଲିଆ ! ବେଶା !
ମା' ମୋର ପଣ୍ଡ ଯାଇଚନ୍ତି···ଆଉ କିଛି ନାହିଁ ।

ହରି—ଅଜା !

ରାଧା—(ପଶିଆସି) ବାବା ! ବାବା ! ଏଁ ହରି !

ହରି—ମାଉସୀ ! କଣ ହେଲାକି ମାଉସୀ ? କ'ଣ ହେଲା
ଝରଣାର ?

ରାଧା—କୋଠାରୁ ଡେଇଁ ପଡ଼ିଚନ୍ତି ହରି । ମୁଣ୍ଡଟା ଏକାବେଳକେ
ଫାଟି ଯାଇଚି ।

ହରି—ମାଉସି !

ରାଧା—ଡାକ୍ତରଙ୍କ ଘରେ ଫୋନ୍ ଆସିଛି । ତୁ ଟିକେ ଯାଇ ତାକୁ
ଦେଖାକର ବାପ !

ହରି—ଝରଣା ! (ବାହାର କରି ବୁଲାଯାଉଥିଲେ ପୁଣି ଅଟକି ଯାଇ)
ମାଉସି ! ଝରଣା କୋଉଠି ଅଛି ? ତାଙ୍କ ଘରେ ?

ସୁଧା—ନା—ଡାକ୍ତରଖାନାରେ ?

ଫଣୀ—ଶାନ୍ତନୁବାବୁ ?

ସୁଧା—ସେ ମଧ୍ୟ ସେଇଠି ଅଛନ୍ତି । ତାଙ୍କ ଅବସ୍ଥା ବି ଭାରି ଖରାପ ତାଙ୍କୁ ବି ମୋର ଟିକିଏ ଦେଖା କରିବା ଉଚିତ୍ ।

ଫଣୀ—ନା-ନା-ମୁଁ ସେଠିକି ଯିବିନି ମାଉସି ।

ସୁଧା—ଫଣୀ ! ଫଣି ! ଅଭିମାନ କରିବାର ବେଳ ଏ ନୁହେଁ ବାପ··ତୁ ଚାଲିବ ଚାଲ ।

ଫଣୀ—କେଉଁ ମୁହଁ ନେଇ ମୁଁ ଶାନ୍ତନୁ ବାବୁଙ୍କ ଆଗକୁ ଯିବି ମାଉସି ? ନା-ନା- ମୁଁ ଯିବିନି ମାଉସି—ମାଉସି ମୁଁ ଯିବିନି ।

ରଘୁ—ଏଁ କ'ଣ କହିଲୁ ? ଯିବୁନି ? ପାଜି···ବଦମାସ···ନେମକ ହାରାମ୍ ···

ସୁଧା—ଛିଃ ! ସେତେବେଳେ ତୋର ଆବୃତ୍ତି ଶୁଣାର··ନ ପଦୁଟିଏ 'ସ୍ୱର୍ଗ' ଛଡ଼ା ଅନ୍ୟ କିଛି କହୁନା ବାପ ! ଏ ଅବସ୍ଥାରେ ତୋର ତାଙ୍କୁ ଦେଖା କରିବା ଖୁବ୍ ଉଚିତ । ନା କହିଲେ ସେ ହୁଏତ ମରି ବି ପାରନ୍ତିରେ ।

ଫଣୀ—ଏଁ, ମରିଯିବେ ! ନା-ନା, ମୁଁ ଯିବି ମାଉସି···ମୁଁ ଯିବି ସ୍ୱରଣା ! (ଚିତ୍କାର କରି କାନ୍ଦନ୍ତି ବାହାରିଗଲେ)

## ତୃତୀୟ ଦୃଶ୍ୟ

[ କଟକ ଡାକ୍ତରଖାନା ବାରଣ୍ଡା – ନର୍ସିଂହୋମର ସାମନା ଭାଗ—ଶାନ୍ତନୁବାବୁ ଓ ଡାକ୍ତର କଥାବାର୍ତ୍ତା କରୁ କରୁ ଉଠି ଆସିଲେ । ]

ଶାନ୍ତନୁ—ମୁଁ ତା ହାତରେ ରକ୍ତପାରୁନ ଡାକ୍ତର ! ମୁଁ ତା
ହାତରେ ପଟପାକେଟଣ୍ଡ୍ ଦେଖାଇ ପାରୁନ୍ତି । ତାକୁ
ଦେଖିଲେ ଦେଳକୁ ମୋ ମୁଣ୍ଡ ଘୂରଉଠ ଯିମିତ ଘ'ଣ
ହୋଇଯାଉଛି । ଡାକ୍ତର ! ଝିଅଣା କଣ ବଞ୍ଚିବ ନ !

ଡାକ୍ତର—ନିଶ୍ଚୟ ବଞ୍ଚିବ ଶାନ୍ତନୁ ବାବୁ ··ନିଶ୍ଚୟ ବଞ୍ଚିବ । ଆପଣ
ମୋଟେ ବ୍ୟସ୍ତ ହୁଅନ୍ତୁ ନ । ଟିକେଟ ବଡ଼ ବଡ଼ ଇନ୍‌ଜେକ୍ସ
ଭଲ ହୋଇଛି···

ଶାନ୍ତନୁ—କିନ୍ତୁ ଡାକ୍ତର, ବୃଦ୍ଧ ବ୍ୟାଙ୍କର ଏତେ ରକ୍ତ ଦେଉନ୍ତୁ
କୋଣ୍ଡ ରକ୍ତ ତ ତା ପାଙ୍ଗରେ ମିଶିଲା ନ, ଆଉ ଏଇ ଦ'
ଜଣଜଣଙ୍କ ରକ୍ତ ମିଶିବ ବୋଲି କାହିଁ ବିଶ୍ୱାସ ?

ଡାକ୍ତର—ଆଃ, ଆପଣ ଏମିନ୍ତ ବ୍ୟସ୍ତ ହେଉଛନ୍ତି କାହିଁକି ଶାନ୍ତନୁ ?

ଶାନ୍ତନୁ—କିନ୍ତୁ ରକ୍ତ ଯଦି ନ ମିଶିଲା, ତା ହେଲେ ମୋ ଝିଅଣା
କମିତ ବଞ୍ଚିବ ଡାକ୍ତରବାବୁ ? ଆଉ କିଛି ଉପାୟ ନାହିଁ ?

ଡାକ୍ତର—ନାଁ, ନାହିଁ କାହିଁକି ପ୍ରଥମ ବୁନ୍ଦ ଗୁଡ଼ାକ ଦେଖାଯାଉ ।
ଯଦି ଏକାବେଳକେ କାହାର ଦେହରେ ନ ମିଶେ, ତାର
ଅନ୍ୟ ଉପାୟ କରିଣିବ । କିନ୍ତୁ ରିପୋର୍ଟଟା ଆଗ ଆସୁ
ଲାବୋରେଟେରୀରୁ ।

କାଳି—(ସ୍ୱଗତ) ଉଃ ଟ୍ରୁ ବ ଗୋରା ଫ୍ରାଙ୍କ୍ ମଟେ ଦରକ୍ତ
କରନ । ଆଇ ଆମ୍ ଓଭର ଡନ । ତମେ ମରିବାକୁ
ବ୍ୟସ୍ତ—ମୁଁ କିନ୍ତୁ ଜଣକୁ ବଞ୍ଚାଇବା ପାଇଁ ବ୍ୟସ୍ତ, ଡୁଇଟ୍
ଇଜ୍ ମୋର୍ ଇମ୍ପୋର୍ଟାଣ୍ଟ···ଟ୍ରୁ ବ ଗୋଭର ଫ୍ରାଙ୍କ୍ ଡୁଇଟ୍
ମୋର ଇମ୍ପୋର୍ଟାଣ୍ଟ ଇଜ ?

ଡାକ୍ତର—ହେଇ କାଳିଦାସ ଆସିଗଲେଣି । କାଳିଦାସ ! କାଳିଦାସ !

କାଳି—ଜଷ୍ଟ ଏ ମିନିଟ୍ ପ୍ଲିଜ୍ - ଟ୍ରୁ ବ ଗୋଭର ଫ୍ରାଙ୍କ୍ ଭଗବାନଙ୍କୁ

ତୁମେ ପଡ଼ନ୍ତରେ ଦେଖା କରିପାର; କିନ୍ତୁ ଜଣେ ବଡ଼ ଡାକ୍ତରଙ୍କୁ ବୁଝିବି, ବୁଝିଲ !

ଘୁଣି—ବାବୁ ! ବାବୁ !

କାଳ—ଅପେକ୍ଷା କର । ଆଜି ଆମ ଡିସ୍‌ପେନ୍‌ସେରୀ ଟୁ ବ ଭେଇ ଫ୍ରାଙ୍କ । (ପ୍ରବେଶ)

କାଳ—ମିଶିଛି ପାରୁ ମିଶିଛି । ଦୁଧ ଏକବାରେ ମିଶିଛି ।

ଡାକ୍ତର—ମିଶିଛି ?

କାଳ—ହଁ, ମାଜଷ୍ଟ ଦେଖ ଚଳ ତାଙ୍କର ଦୁଧ ମିଶିଛି ।

ଡାକ୍ତର—(ଶାନ୍ତନୁଙ୍କୁ) ମାଜଷ୍ଟ ଦେଖ ?

ଶାନ୍ତନୁ—ମୋର ଗୋଟିଏ ମେଣ୍ଟ୍-ପରସ୍ଥ ଡାକ୍ତର ।

କାଳ—ମାଜଷ୍ଟ, ଟୁ ବ ଭେଇ ଫ୍ରାଙ୍କ ମେଣ୍ଟ୍-ପରସ୍ଥ ?

ଶାନ୍ତନୁ—ହିଁ କାଳଦାଶ ! ତୁମେ ତାଙ୍କୁ ଚିହ୍ନନା । ସେ ଅଳ୍ପ-ଧନ ହେଲ ଅଛି ମୋର ଘରେ ।

ଡାକ୍ତର—ଏଣା ଭିତରୁ ସେ କଣ ଗଜ ଅଛି ଦୁଧ ଦବାକୁ ?

ଶାନ୍ତନୁ—ହଁ ଡାକ୍ତର, ସେ ଗଜ ଅଛି ।

ଡାକ୍ତର—ତାହେଲେ ତାଙ୍କୁ ଜଲଦି ଡାକନ୍ତୁ । (ଶାନ୍ତନୁ ଯୁଲଗଲେ) ତୁମେ ଠିକ୍ ଦେଖିଛ କାଳଦା'ଶ ମାଜଷ୍ଟର ଦୁଧ ମିଶୁଛି ?

କାଳ—ହଁ ବାବା, ମୁଁ ଠିକ୍ ଦେଖିଛି ।

ଡାକ୍ତର—ବେଶ୍ ବେଶ୍, ମୁଁ ତାହାଙ୍କଲ ଟିକଏ ଭିତରେ ଅଛି। ତୁମେ ଏଇଠି ଥାଅ । ମାଜଷ୍ଟ ଆସିଲେ ମତେ ଖବର ଦବ । (ଯୁଲ ଯାଉଥିଲେ)

କାଳ—କିନ୍ତୁ ବାବା ମତେ ଗୋଟାଏ ଲେକ ଟୁ ବ ଭେଇ ଫ୍ରାଙ୍କ୍ କରକ୍ତ କଣ ପାଇଲଣି ଆପଣଙ୍କ ଧାଡ଼ରେ ଦେଖା କରିବ ବୋଲ ।

ଦେବୀଙ୍କ ଭଳି ଭକ୍ତବତ୍ସଳା ମା'ଙ୍କୁ ମୁଁ ନେଇ ପଳେଇବି,
ରବି ଭଳି ପୁଅକୁ ମୁଁ ଦାଣ୍ଡରେ ବସେଇ ଦେଇବି ।
ମୁଁ ସେଠିକାର ତ ଆଉ କିଏ ସେଠିକି ।

ଡାକ୍ତର—(ଶାନ୍ତନୁଙ୍କୁ) ପିଏ କାରେକ୍ଟର ଆଉଟସାଇଡ଼୍ ! ହୁଁ,
ଖାଲି ସେତିକି ବୁଝିହଁ ଗୁଣୁଥିଲି···ତୁମେ ମନେ କ ର ସୁସ୍ଥ
ନଥିଲ···ସେଥିଲାଗି ମୁଁ ଖସିଆସିଲି । ମୁଁ କିନ୍ତୁ ଠିକ୍ ଜାଣି
ଥିଲି ତୁମକୁ । ଆଉଟ୍ ଦୃଷ୍ଟିରେ ଯାହା ହେଉ ପଛକେ
ମୁଁ କିନ୍ତୁ ଠିକ୍ ଜାଣିଥିଲି···ଇଏ ଆଉ ଦ କଲପ୍ରିଟ୍ ।

ବୁଢ଼ା—(ଯୋଡ଼ହାତ) ମତେ କ୍ଷମା କରନ୍ତୁ ଡାକ୍ତର ବାବୁ, ମତେ
କ୍ଷମା କରନ୍ତୁ । ମତେ ଟିକିଏ ଦୟାକରି କୁହନ୍ତୁ ମୋ
'ମା' କେଉଁଠି ଅଛନ୍ତି ? ଜୀବନର ଏଇ ଶେଷ ମୁହୂର୍ତ୍ତରେ
ମୁଁ ଟିକିଏ ତାଙ୍କୁ ଦେଖା କରିବି ଡାକ୍ତର ବାବୁ···ମୁଁ
ତାଙ୍କ ଗୋଡ଼ତଳେ ପଡ଼ି କ୍ଷମା ଭିକ୍ଷା ମାଗିନେବି ।

ଡାକ୍ତର—ହଉ ହଉ, ଯାଅ—ତୁମର ସେ ଚେତନା ଆସିଛି ଯେବେ
ଯନ୍ତ୍ରେସ୍ନ—ହଉ ହଉ, ଯାଅ । କାଳଦାଶ ! ତାଙ୍କର
ବ୍ୟବସ୍ଥା କ'ଣ ଟିକିଏ ବୁଝ । ଆସନ୍ତୁ ଶାନ୍ତନୁ ବାବୁ ।
(ଦୁହେଁ ବାହାରିଗଲେ)

କାଳି—ଦ୍ୟାଗଲ ଟ୍ରୁ ଓ ଟ୍ରେଜ୍ ଡ୍ରାମା !

ବୁଢ଼ା—ନା-ନା ଡାକ୍ତର ବାବୁ, ମୋର ବେଡ୍ ଦରକାର ନାହିଁ,
ମୋର ଔଷଧ ଦରକାର ନାହିଁ···ମୋର କିଛି ଦରକାର
ନାହିଁ । କେବଳ ମୋ ମା'ଙ୍କୁ ମୁଁ ଟିକିଏ ଦେଖିବି ।

କାଳି—(ବୁଢ଼ା ମୁହଁକୁ ଅନେଇ ଦେଖି) ଠିକ୍ ଯୋଗାଏ ଡ୍ରାମାଟିକ
କାରେକ୍ଟର । ତୁମ ମୁହଁର ପୋଜ୍, ତୁମ ମୁହଁର ଏକ୍ସ-
ପ୍ରେସନ୍, ତୁମ ମୁହଁର ଫ୍ରିଲ୍ ଦେଖି ମୁଁ ଠିକ୍ ବୁଝିଛି

ତୁମେ ହଜାର ଟଙ୍କା ଦେଲେ ଫ୍ରାଙ୍କ୍ ସେକ୍ସପିଅରଙ୍କ ଅଥେଲୋର ଇଗୋ କାରେଜାଉ ।

ଗୁଣ—ବାବୁ !

କାଳ—ଷ୍ଟପ୍, ଚଳେ, ଟଙ୍କ ଦେଲେ ଫ୍ରାଙ୍କ୍ ।

ଗୁଣ—କୁଆଡ଼େ ବାବୁ ?

କାଳ—ଟି. ବି. ଓ୍ୱାର୍ଡକୁ, ଅଣ୍ଟା ଗାଲ ଭଲ ହବାକୁ ।

ଗୁଣ—ନା-ନା, ମୋର ଅଣ୍ଟା ଧରିବାର ନାହିଁ ଡାକ୍ତର ବାବୁ— ମୁଁ ଭଲ ହବାକୁ ଚାହେଁନା ।

କାଳ—ମତେ ଛାଡ଼ନ୍ତୁ ନ, ଟଙ୍କ ଦେଲେ ଫ୍ରାଙ୍କ୍ ତୁମେ ହଜାର ଖୁନ ମାଫ ମର୍ଡରର—ଚଳ୍ ! ଆଗେ ବଢ଼ ।

ଗୁଣ—କୁଆଡ଼େ ଯିବ ବାବୁ ?

କାଳ—ଓଡ଼ୀ ଖାଇ ଭଲ ହେଲେ ଜନ୍ମଦିନ ସେଲ୍‌ରେ ଜଡା ବାଡ଼େଇବାକୁ; ଟଙ୍କ ଦେଲେ ଫ୍ରାଙ୍କ୍ ।

(ଚଣ୍ଡିଆ ଦେଇ ଦେଇ ବାହାର ହେଇଗଲେ । ପୁଣି ଆସିଲେ ଡାକ୍ତର—ପଛେ ପଛେ ଶାନ୍ତନୁ ବାବୁ ।)

ଡାକ୍ତର—ଓହୋ, କଣ୍ଟ୍ରୋଲ ପର ଆପଣ ଏମିତି ବ୍ୟସ୍ତ ହୁଅନ୍ତୁ ନା!

ଶାନ୍ତନୁ—ଡାକ୍ତର ! ଡାକ୍ତର !

ଡାକ୍ତର—ଆପଣ ଗଲେ··ଆପଣ ଯାନ୍ତୁ । ଦେଖନ୍ତୁ, ସେ ମାନସୀ ଆସିଲା କି ନାହିଁ ।

ଶାନ୍ତନୁ—ହିଁ ହିଁ ମୁଁ ଯାଉଛି ଡାକ୍ତର, ମୁଁ ଯାଉଛି । (ଯାଉଥିଲେ;

ସୁଧା—(ଭିତରୁ) ମୁଁ ଆସିଗଲିଣି ବାବୁ; ମୁଁ ଆସିଗଲିଣି ।

(ପଶିଆସିଲେ)

ଶାନ୍ତନୁ—ଏଇ ତ ମାନସୀ !

ଡାକ୍ତର—କଏ ?

ସୁଧା—ଡାକ୍ତର ବାବୁ ?

ଡାକ୍ତର—ସୁଧା ଦେବୀ ! ଆପଣ ?

ସୁଧା—ନା-ନା-ମୁଁ ସୁଧା ନୁହେଁ···ମୁଁ ମାଳତୀ ।

ଶାନ୍ତନୁ—ସୁଧା ! ସୁଧା କିଏ ଡାକ୍ତର !

ଡାକ୍ତର—ସେ ହେଉଛି ସୁଧା ଦେବୀ ଶାନ୍ତନୁ ବାବୁ, ଯାହାଙ୍କୁ ଆପଣଙ୍କର ଅଲିକ୍ ସ୍ୱାମୀ ହତ୍ୟା ଅପରାଧରେ ପନ୍ଦର ବର୍ଷ ଜେଲ୍ ହୋଇଥିଲା । ଶ୍ରୀକାନ୍ତର ସ୍ତ୍ରୀ । ଏଇ ଟିକିଏ ଆଗରୁ ଗୁଣମଣି ଯାହାଙ୍କ ପାଖରୁ ନିଜ ଅପରାଧ ପାଇଁ କ୍ଷମା ଭିକ୍ଷା ମାଗୁଥିଲା···ଏଇ ହତଭାଗିନୀ ସେଇ ସୁଧା ଦେବୀ ।

ସୁଧା—ଗୁଣମଣି ?

ଡାକ୍ତର—ହଁ ସୁଧା ଦେବୀ ! ଏଇ ଟିକିଏ ଆଗରୁ ଏଇଠି ଶାନ୍ତନୁ ବାବୁଙ୍କ ଆଗରେ ସେ ଗୋଡ଼ଧରି କ୍ଷମା ମାଗୁଥିଲା । ଶ୍ରୀକାନ୍ତକୁ ସେଇ ବିଷ ଦେଇ ମାରିଚି ସୁଧାଦେବୀ—ସେଇ ଦୋଷ ଦେଇଛି ।

ସୁଧା—ଡାକ୍ତର ବାବୁ ! ଗୁଣମଣି ତା'ହେଲେ କଳଙ୍କର ବୋଝଟା ମୋ ମୁଣ୍ଡରୁ ଉଠାଇ ନେଇଛି ? ବେଶ୍ ବେଶ୍, ମୋ ନାମ ସଫାହୋଇଛି ଡାକ୍ତର ବାବୁ, ମୋ ନାମ ସଫାହୋଇଛି । ହଁ, ଆପଣ ଆଉ ଡେରି କରନ୍ତୁ ନି ଡାକ୍ତର ବାବୁ··· ଚାଲନ୍ତୁ···ଝରଣା ମା'କୁ ମୋର ବଞ୍ଚାନ୍ତୁ ।

ଡାକ୍ତର—କିନ୍ତୁ, ଆପଣ ରକ୍ତ ଦେବେ ?

ସୁଧା—ହଁ ହଁ, ମୁଁ ରକ୍ତ ଦେବି ।

ଡାକ୍ତର—କିନ୍ତୁ ଆପଣଙ୍କର ଏ ବୟସରେ ଏତେ ରକ୍ତ ଦେବାଟା··· ନା-ନା ମୋ ମତରେ ଠିକ୍ ନୁହେଁ ସୁଧା ଦେବୀ ।

ସୁଧା—ମୋର ନାତୁଣୀ ଜୀବନରେ ରକ୍ତ ଦେବାକୁ ମୁଁ ଆପଣଙ୍କୁ ଅନୁରୋଧ କରୁଛି ଡାକ୍ତର । ମୁଁ ମୋର ସ୍ୱଇଚ୍ଛାରେ

ରକ୍ତ ଦରକାର । ମୁଁ ପରା ମୋ ଝରଣା ମା ପାଇଁ ମରି
ମଧ୍ୟ ଯାଏ···ମୁଁ ପ୍ରକୃତରେ ମଣିଷ ନ ଡାକ୍ତର, ବରଂ
ମୋର ରହିବ ଝରଣା ମୋର ବଞ୍ଚିଥିବା ଯାଏଁ ।

ଶାନ୍ତନୁ—ନା-ନା-ନା-ରାଧା ଦେବୀ, ମୁଁ ତ ଏତେ ବଡ଼ ଅନ୍ୟାୟ କରିପାରିବି ନି । ମୋ ନିଜକୁ ବଞ୍ଚେଇବାଲାଗି ଆପଣ ଏ ତ୍ୟାଗ କରିବେ କାହିଁକି ?

ରାଧା—(କାନ୍ଦି) ମୁଁ କାହା କଥା ଶୁଣିବାକୁ ପ୍ରସ୍ତୁତ ନୁହେଁ ଡାକ୍ତର ! ମୁଁ କାହା କଥା କେବେ ଶୁଣିବି ନି । ମୁଁ କହୁଛି ଆପଣ ମୋର ରକ୍ତ ନିଅନ୍ତୁ···ଝରଣାକୁ ମୋର ବଞ୍ଚାନ୍ତୁ । ନିଜର ସନ୍ତାନକୁ ବଞ୍ଚେଇବା ଲାଗି ଦରକାର ପଡ଼ିଲେ ମା'ର ରକ୍ତଦାନ କରିବାଟା କ'ଣ କର୍ତ୍ତବ୍ୟ ନୁହେଁ ଡାକ୍ତର ? ଝରଣା ମୋର ଝିଅ···ମୁଁ ତାର ମା···ଝରଣା, ଝରଣା ! (ଡାକ ଡାକ ଦଉଡ଼ି ଗଲେ ଭିତରକୁ—ପଛେ ପଛେ ଡାକ୍ତର ଓ ଶାନ୍ତନୁବାବୁ)

## ଶେଷ ଦୃଶ୍ୟ

(ଡାକ୍ତରଖାନାର ନର୍ସିଂହୋମର ଭିତର ପାଖ···ରାଧା ଦେବୀ ରକ୍ତ ଦବାର ପରଦିନର ଘଟଣା···ରାଧା ଦେବୀ ଚେୟାର୍‌ରେ ନାହାନ୍ତି···ରଥକୁ ଖୋଜି ଖୋଜି ବାହାରକୁ ଚାଲି ଯାଇଛନ୍ତି···ପ୍ରବେଶ କରନ୍ତି ଡାକ୍ତର···ରାଧା ଦେବୀଙ୍କୁ ନ ଦେଖି···)

ଡାକ୍ତର— ରାଧା ଦେବୀ ! (ରାଧାଙ୍କୁ ନ ଦେଖି) ଆରେ, ଏ କଣ ? ବେଡ୍ ଖାଲି ! ରାଧା ଦେବୀ କୁଆଡ଼େ ଗଲେ ! ରାଧାଦେବୀ ?

ସୁଧା ଦେବୀ ! କି ଆଶ୍ଚର୍ଯ୍ୟ ! ନର୍ସ···ବେଙ୍କଟେଶ୍ୱ । (ବାହାରୁ ସୁଧା ଦେବୀଙ୍କର 'ଉଃ' 'ଉଃ' ଚିତ୍କାର ଶୁଣି) ସୁଧା ଦେବୀ ! ସୁଧା ଦେବୀ ! (ବାହାରକୁ ଯାଇ ସୁଧା ଦେବୀଙ୍କୁ ଧରି) ସୁଧା ଦେବୀ ! ଉଃ ମାଇ ଗଡ୍ । ଏତ୍ କଣ କରୁଛନ୍ତି ଆପଣ ? ଆପଣଙ୍କର ଜୀବନ ପର୍ଯ୍ୟନ୍ତ ବେଡ୍‌ରୁ ଉଠିବାର କଥା ନୁହେଁ । ଆପଣ ଏକାକିବେଳକେ ଚାଲି ଚାଲି ଆସି ବାରଣ୍ଡାରେ ? ଚାଲନ୍ତୁ···ଚାଲନ୍ତୁ···ଭିତରକୁ ଚାଲନ୍ତୁ । ( ଭିତରକୁ ଧରି ଧରି ଆଣିଲେ )

ସୁଧା—ଡାକ୍ତର ! ଜାଣନ୍ତି, ଶ୍ରୀକାନ୍ତକୁ ପୁଲିସ୍ ଗିରଫ୍ କରିଛି ! ଜେଲ ଯିବ ସେମା ଚୋରାଙ୍କ ଦେଖି ପଡ଼ିଲା । ତା ସ୍କୁଲପାଇଁ ଜମା ମାଟିଲ୍ ଏଇନେ ଏଇଠି ।

ଡାକ୍ତର—ମୁଁ ଜାଣେ ସୁଧା ଦେବୀ, ଜାଣେ ।

ସୁଧା—ହଁ, ଆଉ ଗୋଟାଏ କଥା କଣ ଜାଣନ୍ତି ? ତଣ୍ଡାକ କୋମ୍ପାନୀରେ ସମସ୍ତ ସମ୍ପତ୍ତି ମଦ ଖାଇ ନଷ୍ଟ କରିଦେଇଛି । ଜାଣନ୍ତୁ ଜୀବନର ଗୋଟାଏ—ଏଇ ଦେଖନ୍ତୁ କାଗଜ, ସେପଟରେଇ ଦେଇଛି ମନେ ( କାଗଜ ଦେଖାଇଲେ ) ସବୁ ବିକାଳ ହୋଇ ଯାଉଛି ଡାକ୍ତର । ତାପାଇଁ ଟଙ୍କାର ବ୍ୟବସ୍ଥା କରନ୍ତୁ ।

ଡାକ୍ତର—ଆପଣଙ୍କ କଥା ଆପଣ ବୁଝିଲେ ଆଉ, ତା କଥା ସେ ବୁଝିବେ । ଚାଲନ୍ତୁ ବେଡ୍‌କୁ ।

ସୁଧା—ନା-ନା ସେପଟେ ଯାହାହେଲେ ମଣିଷଟାଏ ତ ! ଆରେ ମୋପରେ କଣ୍ଠର ଉଠିଯା ଖାଲି ଦେହକୁ ଭଲ କର···ଜମା ଶୁଣୁ ନ—ଆରେ, ଏ ଗୁଣ୍ଡାକ ମଣିବାକୁ ଏତେ ବ୍ୟସ୍ତ କାହିଁକି ? କାଉ ଛିଃ ।

ଡାକ୍ତର—ଆଃ ! ରାଧା ଦେବୀ ! ଆପଣ ଟିକିଏ ବନ୍ଦ କଲେ ।
ଆପଣ ଆଉ ଗପନ୍ତୁ ନା, ଟିକିଏ ଶୋଇପଡ଼ନ୍ତୁ ।

ରାଧା—କିନ୍ତୁ ଡାକ୍ତର, ମୋ ରକ୍ତ କାହିଁ ? ରକ୍ତ ଦେଇ ମୋର ଏ ଦାଏ ଆସିଲା ନା···

(ହଠାତ୍ ଧୀରେ ଧୀରେ ଆସିଛି ଝରଣା—ମୁଣ୍ଡରେ ପଟି···ଛିଡ଼ାହୋଇଛି ଗୋଟାଏ କଣରେ)

ଏଇ ଦେଖନ୍ତୁ, ଠିକ୍ ମୋ ଭଳି ଆଉ ଗୋଟାଏ ପାଗଳୀ । ଏକାବେଳକେ ଉଠି ବୁଲି ଆସିଲାଣି ଆଉ ଦେଖନ୍ତୁ ।

ଡାକ୍ତର—( ବ୍ୟସ୍ତ ହୋଇ ) ଏଁ ଝରଣା, ତୁମେ ? ଆରେ ଏ କଣ ସବୁ ହଉଛି ? ନର୍ସ ! ବେବେହେର !

ରାଧା—ଆରେ, ମୋ ମା ପାଇଁ ନର୍ସ କଣ ହେବ ? ଆ ମା ଆ—(ପାଖକୁ ଯାଇ ଧରି) ଏଠି ପଶୁ ମାନଙ୍କ ଶୃଙ୍ଖଳୀ ଠିଆ ହୋଇଛି, ଡାକ୍ତର !

ଝରଣା—ମତେ କ୍ଷମା କର ମା, ମତେ କ୍ଷମା କର । ମୁଁ ବାବାଙ୍କଠୁ ସବୁ ଶୁଣି ସାରିଛି । ଯାହାଙ୍କର ପାଦଧୂଳି ନେଇ ମୁଣ୍ଡରେ ମାଖିବାର କଥା, ତାଙ୍କୁ ଉପରେ ମୁଁ ଶୃଙ୍ଖଳୀ କରି ରଖିଥିଲି !

ରାଧା—ଏଇ ଦେଖନ୍ତୁ ଡାକ୍ତର, ଏ ବି କ୍ଷମା ମାଗିଲାଣି । ଗୁଣମଣି କ୍ଷମା ମାଗୁଛି, ଜନକ କ୍ଷମା ମାଗୁଛି, ଉପରର ଭଏ ତ ଦେଇ କ୍ଷମା ଆରମ୍ଭ କଲେଣି । ଆରେ ଏତେ ଗୁଡ଼ାଏ କ୍ଷମା ମୁଁ ଆଣିବି କୋଉଠୁ ?

ଡାକ୍ତର—କିନ୍ତୁ ରାଧା ଦେବୀ ! (ଝରଣାକୁ ଲକ୍ଷ୍ୟ କରି) ଓହୋ, ତୁମେ କାହିଁକି ଉଠିଆସିଲ ଝରଣା !

ରାଧା—ଭୁଲ ଟିକିଏ ବୁଲି ତ ମା ଖଟକୁ । ଏ ଡାକ୍ତରଗୁଡ଼ାକ ବଡ଼

ନର୍ସ୍—ମା ପାଖରେ ପିଲାକୁ ତ ମିଶିବାକୁ ଦେବେନ । ଆପଣ ବର୍ତ୍ତମାନ ଯାଇପାରନ୍ତି ଡାକ୍ତର ବାବୁ । (ଝରଣାକୁ ନେଇ ଖଟରେ ବସିଗଲେ)

ଡାକ୍ତର—ବେଶ, ବେଶ, ମୁଁ ଯାଉଛି । ଆପଣମାନେ ଏଠି ଯାହା ଇଚ୍ଛା ତା କରନ୍ତୁ ।

ରାଧା—(ହସି) ଆପଣ କ'ଣ ଭାବୁଛନ୍ତି ଡାକ୍ତରବାବୁ, ମୋ ଦେହରୁ ରକ୍ତ ନେଇଗଲେ ମୋ ବାଳି ମୁଁ ମରିଯିବି ? ନା-ନା-ନା-ସେ କଥା ଆଦୌ ନୁହେଁ । ଆପଣଙ୍କର ବନ୍ଧୁ ସୁକାନ୍ତ ନେଇଥିଲା···ମରଣ ନାହିଁ—ସେପାଖରେ ଥାଇ ବି ମତେ ଝିଅଟି ମୋ ଝିଅକୁ ମୁଁ ବଞ୍ଚେଇ ପାରେଇଛି···ଆମେ ଏକା ପାରେଇଛୁ (ହସି) ପାରେନାହିଁ ଜଣେ ବୁଝିଲେ—କାଳି ସକାଳେ ମତେ ଆଉଟି ଖୁଆଇ ଦେଇ ଯା । ସିଏ ମତେ ଆଜି ଏଠି ରଖି ଦେବେ ଡାକ୍ତର ! ହଁ, ଅଳ୍ପ କାହିଁକି ରକ୍ତ ଦେ— ସୁନାମଣି ତ କହୁଥାଏଁଲାଣି ମୁଁ ନିର୍ଦ୍ଦୋଷ ବୋଲି···ବୋଧେ ତ ମୋ ମୁଣ୍ଡରୁ ଖସିଗଲାଣି—ହଁ, ଡାକ୍ତର ବାବୁ, ବଞ୍ଚିଥିଲେ ତ ମୁଁ ଅନେକ କହିବି···ତା ନ ହେଲେ ଆପଣଇ ମୋର ଶେଷ ଭରସା । ( ଆସିଚନ୍ତି ଶାନ୍ତନୁ ଓ ରବି ) ଆପଣ ଟିକଏ ମୋ ରବିକୁ କହିଦେବେ ଡାକ୍ତର ବାବୁ···ମୁଁ ନିର୍ଦ୍ଦୋଷ···ମୁଁ ତା ବାପାକୁ ମାରି ନି···ମାରିଛି ସୁନାମଣି । ରବି ମୋର ଆସିବା ପାଇଁ ମୁଁ ଆଉ ବଞ୍ଚିବ ନି ଡାକ୍ତରବାବୁ !

ଶାନ୍ତନୁ—ରାଧା ଦେଖ !

ରାଧା—( ବୁଲାପଡ଼ି ରବିକୁ ଦେଖି ) ରବି !

ରବି—ମାମୀ ! ( କୁଣ୍ଢେଇ ପକେଇଲା ରାଧାଙ୍କୁ )

ରାଧା—ଏବେ ଆନନ୍ଦ ତ ମୁଁ ଯିବି ପାରିବି ନା ଡାକ୍ତର ! ଅରେ

ଆରେ, ମୋ ଝରଣା କାହିଁ ? ଡାକ୍ତର ବାବୁ, ମୋ ପାଖକୁ
ଟିକଏ ଆଣି ଦିଅନ୍ତୁ । ଝରଣା ! ଝରଣା !
( ଡାକ୍ତର ଝରଣାକୁ ପାଖକୁ ଆଣିଦେଲେ—ରାଧା ଉଠିକି
ତା' ପାଖରେ ଧରେ )

ରାଧା—କ'ଣ ଶାନ୍ତନୁ ବାବୁ, ନିଜର ସ୍ୱାମୀକୁ ଯିଏ ହତ୍ୟା ଦେଇ
ମାରିପାରେ, ଯିଏକି ଟୋକାଟାଏ ଭଳିଆ ସ୍ତ୍ରୀ ପାଖରେ ଝରଣା
ଛିଆଡ଼େଲେ ଆପଣଙ୍କର ସମ୍ମାନରେ ବାଧା ଆସୁ ନ ଥ ?

ଶାନ୍ତନୁ—ରାଧା ଦେବୀ ! ଝରଣା ଆପଣଙ୍କର ଝିଅ । ଆପଣ
ତାର ମା' ।

ରାଧା—ଡାକ୍ତର ! ଝରଣା ମୋ ଝିଅ...ମାଳତୀର ଝିଅ ବାବୁ,
ମାଳତୀ ଆପଣଙ୍କର କଳଙ୍କିନୀ ସ୍ତ୍ରୀ...କଳଙ୍କିନୀ ଝିଅକୁ କେମିତି
ଘର ଭିତରେ ରଖି ପାରିବ ? ସମାଜ, ଲୋକ ସ୍ୱାମୀବନ୍ଧୁ।
ଅଥବା ସମାଜର ମୁଖ ସାମ୍ନାରେ ତାଙ୍କୁ ଲଜ୍ଜା ଦେବ,
ଆପଣଙ୍କର ମତ କଣ ବାବୁ ?

ଶାନ୍ତନୁ—ସେ ମୋର ସୌଭାଗ୍ୟ ରାଧା ଦେବୀ...ସେ ମୋ
ସୌଭାଗ୍ୟ ।

ରାଧା—ଉହୁଁ...ନା, ନା, ମୋ ଝିଅକୁ ତ ମୁଁ ଏତେ ଜଲଦି ବାହା
ଦେବିନି ଡାକ୍ତରବାବୁ ! ମୋ ଉତ୍ତର କଣ ବଦଳି ଯିବ ନାହିଁ ?

ଡାକ୍ତର—ରାଧା ଦେବୀ, କ୍ଷମା କରିବେ । ଶ୍ରୀକାନ୍ତ ମୋର ବନ୍ଧୁ—
ଆପଣଙ୍କୁ ମୁଁ କହି ଦେଉଥିଲି...ସେ କଥା ମୁଁ ରଖି ପାରି
ନି । ରବିକୁ ମୁଁ ଖବର ପଠାଇବି ।

ରାଧା—ନା—ନା ଡାକ୍ତର, କେଉଁ ପଠେଇବ ମୋ ରବିକୁ ଖବର ।
କାଲି ସକାଳେ ସେ ଆମର ଶୁଣାଇ ଦେଇ ନ ରବିକୁ
ଖବର ପଠେଇବ ବୋଲି । ଏଇ ଦେଖନା...

ଏଠେଇକି ସେ ଯିବ ? ଜାଣ ଡାକ୍ତର, କୋଠାଟା ଚଉଦ ହଜାର ଟଙ୍କାରୁ କିନ୍ତୁ କମ୍ ହବନି···ସବୁ ତ ସାରିଲ—ସେଇ ଖଣ୍ଡିକ ସ୍କୁଟ ପାଇବା···ବହୁତ ଆଶା କରିଥିଲି ଡାକ୍ତର···ପୁଅକୁ ବିଲାତ ପଠେଇବ···ନା-ନା ଲୁହରେ ପଠେଇବ ଶ୍ରୀକାନ୍ତ—ତୁମ ପୁଅକୁ ତୁମେଇ ବିଲାତ ପଠେଇବ···ଶ୍ରୀକାନ୍ତ ! ଏଥର ସେପଟାରୁ ଆସି ଦେଖିଯାଅ ଶ୍ରୀକାନ୍ତ ସ୍ୱାମୀହରା ବିଧବା ଗଧାର ପୁଅ ରବୀନ୍ଦ୍ର ଚୌଧୁରୀ ବାର-ଆଟ୍-ଲ ପଢ଼ିବାକୁ କିପରି ବିଲାତ ପାଉଛି···ଶ୍ରୀକାନ୍ତ ! ଲଇଫ୍ ଇଜ୍ ରିଅଲି ଓ୍ୱାଣ୍ଡରଫୁଲ୍ !

—ଯବନିକା—

